# ତ୍ରିମନ୍ତ୍ର








ନମୋ ଅରିହଂତାଣଂ
ନମୋ ସିଦ୍ଧାଣଂ
ନମୋ ଆୟରିୟାଣଂ
ନମୋ ଉବଜ୍ଝାୟାଣଂ
ନମୋ ଲୋଏ ସବ୍ୱସାହୁଣଂ
ଏସୋ ପଞ୍ଚ ନମୁକ୍କାରୋ,
ସବ୍ୱ ପାବପ୍ପଣାସଣୋ
ମଙ୍ଗଲାଣଂ ଚ ସବ୍ୱେସିଂ,
ପଢମଂ ହବଇ ମଙ୍ଗଲମ୍ ।।୧ ।।
ଓଁ ନମୋ ଭଗବତେ ବାସୁଦେବାୟ ।।୨।।
ଓଁ ନମଃ ଶିବାୟ ।। ୩ ।।
।। ଜୟ ସଚ୍ଚିଦାନନ୍ଦ ।।



## 'ଦାଦା ଭଗବାନ' କିଏ ?

ଜୁନ୍ ୧୯୫୮ର ଏକ ସନ୍ଧ୍ୟା, ସମୟ ପାଖାପାଖି ଛ'ଟା, ଭିଡ଼ରେ ଭରା ସୁରଟ ସହରର ରେଲୱେ ଷ୍ଟେସନ୍, ପ୍ଲାଟ୍‌ଫର୍ମ ନମ୍ବର ୩ର ବେଞ୍ଚ୍ ଉପରେ ବସିଥିବା ଶ୍ରୀ ଅମ୍ବାଲାଲ୍ ମୁଲ୍‌ଜୀଭାଇ ପଟେଲ ରୂପୀ ଦେହମନ୍ଦିରରେ ପ୍ରାକୃତିକ ରୀତିରେ, ଅକ୍ରମ ରୂପରେ, କେତେ ଜନ୍ମରୁ ବ୍ୟକ୍ତ ହେବାପାଇଁ ଆତୁର 'ଦାଦା ଭଗବାନ' ପୂର୍ଣ୍ଣ ରୂପରେ ପ୍ରକଟ ହେଲେ । ଏବଂ ପ୍ରକୃତି ସର୍ଜିତ କଲା ଅଧ୍ୟାତ୍ମର ଅଦ୍ଭୁତ ଆଶ୍ଚର୍ଯ୍ୟ । ଏକ ଘଣ୍ଟାରେ ତାଙ୍କୁ ବିଶ୍ୱ ଦର୍ଶନ ହେଲା । 'ମୁଁ କିଏ ? ଭଗବାନ କିଏ ? ଜଗତ କିଏ ଚଲାଉଛି ? କର୍ମ କ'ଣ ? ମୁକ୍ତି କ'ଣ ?' ଇତ୍ୟାଦି ଜଗତର ସମସ୍ତ ଆଧ୍ୟାତ୍ମିକ ପ୍ରଶ୍ନର ସମ୍ପୂର୍ଣ୍ଣ ରହସ୍ୟ ପ୍ରକଟ ହେଲା । ଏହିପରି ପ୍ରକୃତି, ବିଶ୍ୱ ସମ୍ମୁଖରେ ଏକ ଅଦ୍ୱିତୀୟ ପୂର୍ଣ୍ଣ ଦର୍ଶନ ପ୍ରସ୍ତୁତ କଲା ଏବଂ ତାହାର ମାଧ୍ୟମ ହେଲେ ଶ୍ରୀ ଅମ୍ବାଲାଲ୍ ମୂଲ୍‌ଜୀଭାଇ ପଟେଲ, ଯିଏ ଗୁଜରାଟର ଚରୋତର କ୍ଷେତ୍ରର ଭାଦରଣ ଗାଁ'ର ପାଟୀଦାର, କଣ୍ଟ୍ରାକ୍ଟ ବ୍ୟବସାୟ କରିବାବାଲା, ତଥାପି ପୂର୍ଣ୍ଣ ରୂପରେ ବୀତରାଗ ପୁରୁଷ !

'ବ୍ୟାପାରରେ ଧର୍ମ ରହିବା ଉଚିତ, ଧର୍ମରେ ବ୍ୟାପାର ନୁହେଁ', ଏହି ସିଦ୍ଧାନ୍ତ ସହ ସେ ସାରା ଜୀବନ ବିତାଇଲେ । ଜୀବନରେ କେବେ ମଧ୍ୟ ସେ କାହାରିଠାରୁ ପଇସା ନେଇ ନାହାନ୍ତି, ବରଂ ନିଜ ରୋଜଗାରରୁ ଭକ୍ତମାନଙ୍କୁ ଯାତ୍ରା କରାଉଥିଲେ ।

ତାଙ୍କୁ ଯେପରି ପ୍ରାପ୍ତ ହେଲା, ସେହିପରି କେବଳ ଦୁଇ ଘଣ୍ଟାରେ ଅନ୍ୟ ମୁମୁକ୍ଷୁମାନଙ୍କୁ ମଧ୍ୟ ସେ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ, ତାଙ୍କର ଅଦ୍ଭୁତ ସିଦ୍ଧ ହୋଇଥିବା ଜ୍ଞାନପ୍ରୟୋଗ ଦ୍ୱାରା । ତାହାକୁ ଅକ୍ରମ ମାର୍ଗ କହିଲେ । ଅକ୍ରମ, ଅର୍ଥାତ୍ ବିନା କ୍ରମରେ ଏବଂ କ୍ରମ ଅର୍ଥାତ୍ ସିଢ଼ି ପରେ ସିଢ଼ି, କ୍ରମାନୁସାରେ ଉପରକୁ ଚଢ଼ିବା । ଅକ୍ରମ ଅର୍ଥାତ୍ ଲିଫ୍ଟ ମାର୍ଗ, ସର୍ଟ କଟ୍ ।

ସେ ନିଜେ ପ୍ରତ୍ୟେକଙ୍କୁ 'ଦାଦା ଭଗବାନ କିଏ ?'ର ରହସ୍ୟ ବତାଇବାକୁ ଯାଇ କହୁଥିଲେ ଯେ, "ଏ ଯିଏ ଆପଣଙ୍କୁ ଦେଖାଯାଉଛନ୍ତି ସେ ଦାଦା ଭଗବାନ ନୁହଁନ୍ତି, ସେ ତ 'ଏ.ଏମ୍. ପଟେଲ' ଅଟେ । ମୁଁ ଜ୍ଞାନୀପୁରୁଷ ଅଟେ ଏବଂ ଭିତରେ ଯିଏ ପ୍ରକଟ ହୋଇଛନ୍ତି, ସେ 'ଦାଦା ଭଗବାନ' ଅଟନ୍ତି । ଦାଦା ଭଗବାନ ତ' ଚଉଦ ଲୋକର ନାଥ ଅଟନ୍ତି । ସେ ତୁମ ଭିତରେ ମଧ୍ୟ ଅଛନ୍ତି, ସମସ୍ତଙ୍କ ଭିତରେ ଅଛନ୍ତି । ତୁମ ଭିତରେ ଅବ୍ୟକ୍ତ ରୂପରେ ଅଛନ୍ତି ଏବଂ 'ଏଠାରେ' ମୋ ଭିତରେ ସମ୍ପୂର୍ଣ୍ଣ ରୂପରେ ବ୍ୟକ୍ତ ହୋଇଛନ୍ତି । ଦାଦା ଭଗବାନଙ୍କୁ ମୁଁ ମଧ୍ୟ ନମସ୍କାର କରେ ।"

# ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପ୍ରତ୍ୟକ୍ଷ ଲିଙ୍କ୍

"ମୁଁ ତ କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବି । ପରେ ଅନୁଗାମୀ ଦରକାର କି ନାହିଁ? ପରେ ଲୋକଙ୍କୁ ମାର୍ଗ ତ ଦରକାର ନା?"

**- ଦାଦାଶ୍ରୀ**

ପରମ ପୂଜ୍ୟ ଦାଦାଶ୍ରୀ ଗାଁ'-ଗାଁ', ଦେଶ-ବିଦେଶ ପରିଭ୍ରମଣ କରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ । ସେ ନିଜର ଜୀବନକାଳ ମଧ୍ୟରେ ପୂଜ୍ୟ ଡା. ନୀରୁବେନ ଅମୀନ(ନୀରୁମାଁ)ଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଇବାର ଜ୍ଞାନସିଦ୍ଧି ପ୍ରଦାନ କରିଥିଲେ । ଦାଦାଶ୍ରୀଙ୍କ ଦେହବିଲୟ ପରେ ନୀରୁମା ସେହିପରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି, ନିମିତ୍ତ ଭାବରେ କରାଉଥିଲେ । ପୂଜ୍ୟ ଦୀପକଭାଇ ଦେଶାଇଙ୍କୁ ଦାଦାଶ୍ରୀ ସତ୍‌ସଙ୍ଗ କରିବା ପାଇଁ ସିଦ୍ଧି ପ୍ରଦାନ କରିଥିଲେ । ନୀରୁମାଁଙ୍କ ଉପସ୍ଥିତିରେ ହିଁ ତାଙ୍କର ଆଶୀର୍ବାଦ ଦ୍ଵାରା ପୂଜ୍ୟ ଦୀପକଭାଇ ଦେଶ-ବିଦେଶରେ ଅନେକ ଜାଗାକୁ ଯାଇ ମୁମୁକ୍ଷୁମାନଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଉଥିଲେ, ଯାହା ନୀରୁମାଁଙ୍କ ଦେହବିଲୟ ପରେ ଆଜି ମଧ୍ୟ ଚାଲୁଅଛି । ଏହି ଆତ୍ମଜ୍ଞାନ ପ୍ରାପ୍ତି ପରେ ହଜାର ହଜାର ମୁମୁକ୍ଷୁ ସଂସାରରେ ରହି, ନିଜର ସାଂସାରିକ ଦାୟିତ୍ଵ ବହନ କରି ମଧ୍ୟ ମୁକ୍ତ ରହି ଆତ୍ମରମଣତାର ଅନୁଭବ କରୁଛନ୍ତି ।

ଗ୍ରନ୍ଥରେ ମୁଦ୍ରିତ ବାଣୀ ମୋକ୍ଷାର୍ଥୀମାନଙ୍କୁ ମାର୍ଗଦର୍ଶନ ପାଇଁ ଅତ୍ୟନ୍ତ ଉପଯୋଗୀ ସିଦ୍ଧ ହେବ, କିନ୍ତୁ ମୋକ୍ଷପ୍ରାପ୍ତି ପାଇଁ ଆତ୍ମଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ ଅଟେ । ଅକ୍ରମ ମାର୍ଗ ଦ୍ଵାରା ଆତ୍ମଜ୍ଞାନ ପ୍ରାପ୍ତିର ମାର୍ଗ ଆଜି ମଧ୍ୟ ଖୋଲା ଅଛି । ଯେପରି ପ୍ରଜ୍ଵଳିତ ଦୀପ ହିଁ ଅନ୍ୟ ଦୀପକୁ ପ୍ରଜ୍ଵଳିତ କରିପାରେ, ସେହିପରି ପ୍ରତ୍ୟକ୍ଷ ଆତ୍ମଜ୍ଞାନୀଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତ କରି ହିଁ ସ୍ଵୟଂର ଆତ୍ମା ଜାଗୃତ ହୋଇପାରେ ।

# ନିବେଦନ
## (ଅବଶ୍ୟ ପଢ଼ନ୍ତୁ)

ପରମ ପୂଜ୍ୟ ଦାଦା ଭଗବାନଙ୍କ ଶ୍ରୀମୁଖରୁ ବାହାରିଥିବା ଜ୍ଞାନବାଣୀ ଯାହାକୁ ଅଡ଼ିଓ କ୍ୟାସେଟରେ ରେକର୍ଡ଼ କରାଯାଇଥିଲା । ସେହି ଜ୍ଞାନବାଣୀକୁ ଅଡ଼ିଓ କ୍ୟାସେଟରୁ ଟ୍ରାନ୍ସକ୍ରାଇବ୍ କରି ବହୁତ ବର୍ଷ ପୂର୍ବେ ଆପ୍ତବାଣୀ ଗ୍ରନ୍ଥ ପ୍ରସ୍ତୁତ କରାଯାଇଥିଲା ! ସେହି ଗ୍ରନ୍ଥକୁ ପୁଣି ଥରେ ସଙ୍କଳିତ କରି ନିମ୍ନଲିଖିତ ଛଅ ଛୋଟ-ଛୋଟ ପୁସ୍ତକ ପ୍ରସ୍ତୁତ କରାଯାଇଛି, ଯାହାଫଳରେ ପାଠକଙ୍କୁ ପଢ଼ିବା ପାଇଁ ସୁବିଧା ହେବ ।

୧. ଜ୍ଞାନୀ ପୁରୁଷଙ୍କ ପରିଚୟ
୨. ଜଗତ କର୍ତ୍ତା କିଏ ?
୩. କର୍ମର ସିଦ୍ଧାନ୍ତ
୪. ଅନ୍ତଃକରଣର ସ୍ୱରୂପ
୫. ଆତ୍ମବୋଧ
୬. ସର୍ବ ଦୁଃଖରୁ ମୁକ୍ତି

ପରମ ପୂଜ୍ୟ ଦାଦାଶ୍ରୀ ହିନ୍ଦୀରେ ବହୁତ କମ କହୁଥିଲେ, କେବେ ହିନ୍ଦୀଭାଷୀ ଲୋକ ଆସି ଯାଉଥିଲେ, ଯେଉଁମାନେ ଗୁଜରାଟୀ ବୁଝିପାରୁ ନଥିଲେ, ସେମାନଙ୍କ ପାଇଁ ପୂଜ୍ୟଶ୍ରୀ ହିନ୍ଦୀ କହି ଦେଉଥିଲେ । ତାଙ୍କ ହିନ୍ଦୀ 'ପ୍ୟୋର୍' ହିନ୍ଦୀ ନୁହେଁ, ତଥାପି ଶୁଣିବାବାଲାଙ୍କୁ ତାଙ୍କର ଅନ୍ତର ଆଶୟ 'ଏକଜାକ୍ଟ' ବୁଝା ପଡ଼ିଯାଏ । ତାଙ୍କ ବାଣୀ ହୃଦୟସ୍ପର୍ଶୀ, ହୃଦୟଭେଦୀ ହୋଇଥିବା କାରଣରୁ ଯେପରି ବାହାରିଛି ସେହିପରି ସଙ୍କଳିତ କରି ପ୍ରସ୍ତୁତ କରାଯାଇଛି ଯାହାଦ୍ୱାରା ବିଜ୍ଞ ପାଠକଙ୍କୁ ତାଙ୍କ 'ଡିରେକ୍ଟ' ଶବ୍ଦ ପହଞ୍ଚିବ । ତାଙ୍କର ହିନ୍ଦୀ ଅର୍ଥାତ ଗୁଜରାଟୀ, ଇଂରାଜୀ ଏବଂ ହିନ୍ଦୀର ମିଶ୍ରଣ । ତଥାପି ଶୁଣିବାକୁ, ପଢ଼ିବାକୁ ବହୁତ ମିଠା ଲାଗେ, ନେଚୁରାଲ୍ ଲାଗେ, ଜୀବନ୍ତ ଲାଗେ । ସେହି ଶବ୍ଦ, ତାହା ଭାଷାକୀୟ ଦୃଷ୍ଟିରୁ ସାଦା-ସିଧା ଅଟେ କିନ୍ତୁ 'ଜ୍ଞାନୀପୁରୁଷ'ଙ୍କ ଦର୍ଶନ ନିରାବରଣ ଅଟେ, ସେଥିପାଇଁ ତାଙ୍କର ପ୍ରତ୍ୟେକ ବଚନ ଆଶୟପୂର୍ଣ୍ଣ, ମର୍ମସ୍ପର୍ଶୀ, ମୌଳିକ ଏବଂ ସାମ୍ନାବ୍ୟକ୍ତିର ଭ୍ୟୁ-ପଏଣ୍ଟ୍‌କୁ ଏକଜାକ୍ଟ ବୁଝି ବାହାରିଥିବା କାରଣରୁ ଶ୍ରୋତାଙ୍କ ଦର୍ଶନ ସୁସ୍ପଷ୍ଟ ଖୋଲି ଦିଏ ଏବଂ ଅଧିକ ଉଚ୍ଚକୁ ନେଇଯାଏ ।

**- ଡା. ନୀରୂବେନ ଅମୀନ**

**ବି.ଦ୍ର.-**

ଜ୍ଞାନୀଙ୍କ ବାଣୀକୁ ଓଡ଼ିଆ ଭାଷାରେ ଯଥାର୍ଥ ରୂପରେ ଅନୁବାଦ କରିବାର ପ୍ରୟାସ କରାଯାଇଛି । ପ୍ରସ୍ତୁତ ପୁସ୍ତକରେ ଅନେକ ଜାଗାରେ ବନ୍ଧନୀରେ ଦର୍ଶାଯାଇଥିବା ଶବ୍ଦ ବା ବାକ୍ୟ ପରମପୂଜ୍ୟ ଦାଦାଶ୍ରୀଙ୍କ ଦ୍ୱାରା କୁହାଯାଇଥିବା ବାକ୍ୟକୁ ଅଧିକ ସ୍ପଷ୍ଟତାପୂର୍ବକ ବୁଝାଇବା ପାଇଁ ଲେଖାଯାଇଛି । ଦାଦାଶ୍ରୀଙ୍କ ଶ୍ରୀମୁଖରୁ ବାହାରିଥିବା କିଛି ଗୁଜରାଟୀ ଶବ୍ଦ ଯେମିତିକୁ ସେମିତି *ଇଟାଲିକ୍ସ* ରେ ରଖାଯାଇଛି, କାରଣ ସେ ଶବ୍ଦଗୁଡ଼ିକ ପାଇଁ ଓଡ଼ିଆରେ ଏପରି କିଛି ଶବ୍ଦ ନାହିଁ, ଯାହା ତାହାର ପୂର୍ଣ୍ଣ ଅର୍ଥ ଦେଇପାରିବ । କିନ୍ତୁ ସେହି ଶବ୍ଦର ସମାର୍ଥକ ଶବ୍ଦ ବନ୍ଧନୀରେ ଏବଂ ପୁସ୍ତକର ଶେଷରେ ମଧ୍ୟ ଦିଆଯାଇଛି ।

ଅନୁବାଦଜନିତ ତ୍ରୁଟି ପାଇଁ ଆପଣଙ୍କ ପାଖରେ କ୍ଷମାପ୍ରାର୍ଥୀ ଅଟୁ ।

# ସମ୍ପାଦକୀୟ

ଅନାଦି କାଳରୁ ଜଗତର ବାସ୍ତବିକତା ଜାଣିବା ପାଇଁ ମନୁଷ୍ୟର ପ୍ରୟାସ ଜାରି ରହିଛି କିନ୍ତୁ ସେ ସତ ଜାଣି ପାରିଲା ନାହିଁ । ମୁଖ୍ୟତଃ ବାସ୍ତବିକତାରେ ମୁଁ କିଏ, ଏହି ଜଗତକୁ ଚଲାଇବାବାଲା କିଏ, ତଥା ଏହି ଜଗତର ରଚୟିତା କିଏ, ଏହା ଜାଣିବାର ଅଛି । ପ୍ରସ୍ତୁତ ସଙ୍କଳନରେ ପ୍ରକୃତ କର୍ତ୍ତା କିଏ, ଏହି ରହସ୍ୟ ଖୋଲା କରାଯାଇଛି ।

ସାଧାରଣତଃ ଯଦି ଭଲ ହେଲା ତେବେ 'ମୁଁ କଲି' ମାନିନିଏ ଆଉ ଖରାପ ହେଲା ତେବେ ଅନ୍ୟ ଉପରେ ଆକ୍ଷେପ ଦିଏ ଯେ 'ଇଏ ବିଗାଡ଼ି ଦେଲା ।' ନହେଲେ 'ମୋ ଗ୍ରହଦଶା ବିଗିଡ଼ି ଯାଇଛି' କହିବ ନଚେତ 'ଭଗବାନ କଲେ' ଏପରି ମଧ୍ୟ ଆକ୍ଷେପ ଦେଇ ଦିଏ । ଏ ସବୁ ରଙ୍ଗ୍ ବିଲିଫ୍ ଅଟେ । ଭଗବାନ କ'ଣ ପକ୍ଷପାତ କରିବାବାଲା ଅଟନ୍ତି ଯେ ତୁମର କ୍ଷତି କରିବେ ?

ଏହି ଦୁନିଆ କିଏ ତିଆରି କରିଛି ? ଯଦି ତିଆରି କରିବାବାଲା ଥିବ ତେବେ ତା'କୁ କିଏ ତିଆରି କରିଛି ? ପୁଣି ତା'କୁ ବି କିଏ ତିଆରି କରିଛି ? ମାନେ ତାହାର ଅନ୍ତ ହିଁ ନାହିଁ । ପୁଣି ଅଲଗା ଏହା ବି ପ୍ରଶ୍ନ ଉପସ୍ଥିତ ହୁଏ ଯେ, ତା'କୁ ଯଦି ଦୁନିଆ ତିଆରି କରିବାର ହିଁ ଥିଲା, ତେବେ ପୁଣି ଏଭଳି ଦୁନିଆ କିପରି ତିଆରି କଲା ଯେ ଯେଉଁଥିରେ ସମସ୍ତେ ଦୁଃଖୀ ? କାହାକୁ ବି ସୁଖ ନାହିଁ । ତା'ର ମଜା ଆଉ ଆମର ସଜା, ଏ କିଭଳି ନ୍ୟାୟ ? !

ଏହି ବିଜ୍ଞାନ ପ୍ରମାଣ କରିଛି ଯେ ଏହି ବିଶ୍ୱରେ ଶାଶ୍ୱତ ତତ୍ତ୍ୱ ଅଛି । ଶାଶ୍ୱତ ଅର୍ଥାତ ଯାହାର ଉତ୍ପତ୍ତି ନାହିଁ ଏବଂ ଯାହାର ବିନାଶ ବି ନାହିଁ ଅର୍ଥାତ ଅନାଦି-ଅନନ୍ତ । ଆମ ଭିତରବାଲା ଆତ୍ମା ମଧ୍ୟ ଶାଶ୍ୱତ ଅଟେ । ଏହି ଜଗତ କେହି ତିଆରି କରି ନାହିଁ, ତାହାର ଅନ୍ତ ମଧ୍ୟ ନାହିଁ । ଏହି ଜଗତ ଥିଲା, ଅଛି ଏବଂ ରହିବ । ତାହାକୁ ତିଆରି କରିବାର ଆବଶ୍ୟକତା କେଉଁଠି ? ଏହି ବିଶ୍ୱ ସ୍ୱୟଂଭୂ ଅଟେ ଏବଂ ସ୍ୱୟଂ ସଞ୍ଚାଳିତ ହେଉଛି । ଭଗବାନ ତ ଏଥିରେ କିଛି କରି ନାହାନ୍ତି, ସେ ତ ଜ୍ଞାତା-ଦ୍ରଷ୍ଟା-ପରମାନନ୍ଦୀ ଅଟନ୍ତି ।

ଏହି କାଳରେ କର୍ତ୍ତା ସମ୍ବନ୍ଧୀୟ ସିଦ୍ଧାନ୍ତ ବିଶ୍ୱକୁ ପ୍ରଥମ ଥର ଯଥାର୍ଥ ସ୍ୱରୂପରେ ପରମ ପୂଜ୍ୟ ଦାଦା ଭଗବାନ ଦେଇଛନ୍ତି ଏବଂ ତାହା ହେଉଛି ଏହା ଯେ ଏହି ଦୁନିଆରେ କେହି ସ୍ୱତନ୍ତ୍ର କର୍ତ୍ତା ନୁହେଁ । ଏହି ଦୁନିଆକୁ ରଚିବାବାଲା ବା ଚଲାଇବାବାଲା କେହି ବି ନାହିଁ । ଏହି ଜଗତ ଚାଲୁଛି ତାହା ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ୍ ଏଭିଡେନ୍ସ ଦ୍ୱାରା ଚାଲୁଛି । ଯାହାକୁ ପରମ ପୂଜ୍ୟ ଦାଦାଶ୍ରୀ 'ବ୍ୟବସ୍ଥିତ ଶକ୍ତି' କୁହନ୍ତି ।

ଜଗତରେ କେହି ବି ସ୍ୱତନ୍ତ୍ର କର୍ତ୍ତା ନୁହଁନ୍ତି ମାତ୍ର ସମସ୍ତେ ନୈମିତ୍ତିକ କର୍ତ୍ତା ଅଟନ୍ତି, ସମସ୍ତେ ନିମିତ୍ତ(ମାଧ୍ୟମ) ଅଟନ୍ତି । ଗୀତାରେ ମଧ୍ୟ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ ଯେ ହେ ଅର୍ଜୁନ ! ତୁ ଏହି ଯୁଦ୍ଧରେ କେବଳ ନିମିତ୍ତ ଅଟୁ, ତୁ ଯୁଦ୍ଧର କର୍ତ୍ତା ନୁହେଁ ।

ପରମ ପୂଜ୍ୟ ଦାଦାଶ୍ରୀ ଅନେକ ଦୃଷ୍ଟାନ୍ତ ଦେଇ ନୈମିତ୍ତିକ କର୍ତ୍ତାର ସିଦ୍ଧାନ୍ତ ବୁଝାଇଛନ୍ତି । ଯଦି ଏକ କପ୍ ଚା' ତିଆରି କରିବାର ଥିବ ତେବେ ? କେହି କହିବ, ମୁଁ ଚା' ତିଆରି କଲି... ମାତ୍ର ବାସ୍ତବିକତାରେ ଯଦି ଦେଖିବାକୁ ଯିବା ତେବେ ପାଣି, ଚିନି, ଚା'ପତି, କ୍ଷୀର, ବାସନ, ଷ୍ଟୋଭ, ଦିଆସିଲି, କପ୍, କେତେ ସାରା ଜିନିଷ ଥିଲେ ଏକ କପ ଚା' ହେବ । ତେବେ କିଏ ଚା' ତିଆରି କଲା ? Only Scientific Circumstantial Evidences (ବୈଜ୍ଞାନିକ ସଂଯୋଗଯୁକ୍ତ ପ୍ରମାଣ) ରୁ ହେଲା । ଏହା ତ ଅଜ୍ଞାନତା ଯୋଗୁଁ, ଭ୍ରାନ୍ତିରେ ଅହଙ୍କାର କରୁଛି ଯେ ମୁଁ କଲି । କିନ୍ତୁ କୌଣସି ବି କାର୍ଯ୍ୟ ସବୁ ସଂଯୋଗକୁ ନେଇ ହୁଏ ।

ପ୍ରସ୍ତୁତ ପୁସ୍ତକରେ କର୍ତ୍ତାର ରହସ୍ୟ ପରମପୂଜ୍ୟ ଦାଦାଶ୍ରୀଙ୍କ ସାଧା, ସରଳ ଭାଷାରେ, ହୃଦୟରେ ବସିଯାଏ, ଏହିପରି ବୁଝାଯାଇଛି ।

**- ଡା. ନୀରୁବେନ ଅମୀନଙ୍କ ଜୟ ସଚ୍ଚିଦାନନ୍ଦ**

# ଜଗତ କର୍ତ୍ତା କିଏ?

## Puzzlesome ର ବାସ୍ତବିକତା

**ଦାଦାଶ୍ରୀ :** ଏହି ଜଗତର କ୍ରିଏଟର୍(ରଚୟିତା) କୁ କେବେ ଦେଖିଛ ?

**ପ୍ରଶ୍ନକର୍ତ୍ତା :** ଫଟୋରେ ଦେଖିଛି ।

**ଦାଦାଶ୍ରୀ :** ଏହି ଜଗତର କ୍ରିଏଟର୍ କୁ? କ୍ରିଏଟର୍ ର ଫଟୋ ନଥାଏ । ଫଟୋ ତ, କେହି ବ୍ୟକ୍ତି ଏଠାରେ ଥାଆନ୍ତି, ଯାହାଙ୍କୁ ସବୁ ଲୋକ କୁହନ୍ତି ଯେ 'ଇଏ ଭଗବାନ ହୋଇ ଗଲେ', ତେବେ ତାଙ୍କର ଫଟୋ ଥାଏ । କ୍ରିଏଟର୍ ତ ବଡ଼ ଜିନିଷ ଅଟେ ।

**ପ୍ରଶ୍ନକର୍ତ୍ତା :** ତେବେ ଆମକୁ ଏହା ବୁଝିନେବାର ଅଛି ଯେ ଏ ସବୁ ମିଥ୍ୟା ଅଟେ ?

**ଦାଦାଶ୍ରୀ :** ମିଥ୍ୟା ତ ନୁହେଁ । ମିଥ୍ୟା ତ କାହାକୁ କୁହାଯାଏ ଯେ ଏଠି ପାଣି ନାହିଁ, କିନ୍ତୁ ପାଣି ଦେଖାଯାଉଛି । ଏପରି ମିଥ୍ୟା ନୁହେଁ ଏହି ଜଗତ । ଜଗତ ମଧ୍ୟ କରେକ୍ଟ (ସତ୍ୟ) ଅଟେ ଏବଂ ଆତ୍ମା ମଧ୍ୟ କରେକ୍ଟ ଅଟେ । The world is correct by relative view point & Atma is correct by real viewpoint.(ଜଗତ ସାପେକ୍ଷିକ ଦୃଷ୍ଟିକୋଣରୁ ସତ୍ୟ ଅଟେ ଏବଂ ଆତ୍ମା ବାସ୍ତବିକ ଦୃଷ୍ଟିକୋଣରୁ ସତ୍ୟ ଅଟେ) । ତୁମକୁ ବୁଝା ପଡ଼ିଲା ନା ?

**ପ୍ରଶ୍ନକର୍ତ୍ତା :** ରିୟଲ୍ ଏବଂ ରିଲେଟିଭ୍ ମଧ୍ୟରେ କ'ଣ ପ୍ରଭେଦ ଅଛି ?

**ଦାଦାଶ୍ରୀ :** ରିୟଲ୍, ତା'କୁ କୌଣସି ଜିନିଷର ଆଧାର ଦରକାର ନାହିଁ । ସେ ନିଜେ ସ୍ୱୟଂର ଆଧାରରେ ରହେ । ଅନ୍ୟର ଆଧାରରେ ଅଛି, ସେ ସବୁ ରିଲେଟିଭ୍ ଅଟେ । ପରସ୍ପରର ଆଧାରରେ ରିଲେଟିଭ୍ ରହିଛି । All these relatives are

temporary adjustment & real is permanent.(ଏ ସମସ୍ତ ସାପେକ୍ଷ ସମ୍ବନ୍ଧ ଅସ୍ଥାୟୀ ବ୍ୟବସ୍ଥା ଅଟେ ଏବଂ ଆତ୍ମା ଶାଶ୍ୱତ ଅଟେ ।)

**ପ୍ରଶ୍ନକର୍ତ୍ତା :** ଯେପର୍ଯ୍ୟନ୍ତ ଆତ୍ମା ଅଛି, ସେପର୍ଯ୍ୟନ୍ତ ଜଣା ପଡ଼େ ଯେ ମଣିଷ ବଞ୍ଚିଛି । କିନ୍ତୁ ଶେଷ ପର୍ଯ୍ୟନ୍ତ ମଣିଷର ଅନ୍ତ (end) ତ ହୁଏ ନାହିଁ ନା ?

**ଦାଦାଶ୍ରୀ :** ମଣିଷର end ନାହିଁ ? ତେବେ ଏହି ଗଧଙ୍କର, କୁକୁରଙ୍କର ସମସ୍ତଙ୍କର end ଅଛି ?

**ପ୍ରଶ୍ନକର୍ତ୍ତା :** କାହାର ଅନ୍ତ ହୁଏ ନାହିଁ ।

**ଦାଦାଶ୍ରୀ :** ତେବେ ଏହି ପଜଲ୍(ପ୍ରହେଳିକା), ପଜଲ୍ ହିଁ ରହିବ ? ପଜଲ୍ ସଲ୍ଭ ହୋଇ ପାରିବ ନାହିଁ ? ଯଦି କାହାର ଅନ୍ତ ନାହିଁ ତେବେ ଏହି ପଜଲ୍ ସଲ୍ଭ ହୋଇ ପାରିବ ନାହିଁ । ତୁମକୁ କେବେ ପଜଲ୍ ସୃଷ୍ଟି ହୋଇ ନାହିଁ ।

**ପ୍ରଶ୍ନକର୍ତ୍ତା :** ହଁ, ହୁଏ ।

**ଦାଦାଶ୍ରୀ :** ତେବେ ଏହି ପଜଲ୍ର ଅନ୍ତ କେବେ ଆସିବ ନାହିଁ ? ଦେଖ, କଥା ଏପରି, ପଜଲ୍ ଶବ୍ଦ ହିଁ ଏପରି ଅଟେ ଯେ ସେ ସ୍ୱୟଂ ସମାଧାନ ନେଇ ହିଁ ଆସିଥାଏ । ନହେଲେ ପଜଲ୍ ଶବ୍ଦ ହିଁ ରହିବ ନାହିଁ । ପ୍ରଥମେ ସଲ୍ୟୁଶନ୍ (ସମାଧାନ) ହୋଇଥାଏ, ତେବେଯାଇ ପଜଲ୍ ନାମ ଦିଆଯିବ । ଏଥିରେ ତୁମକୁ ବୁଝା ନପଡ଼ିବା ପରି କିଛି ଜିନିଷ ଅଛି ? ଯଦି ତୁମକୁ ବୁଝିବାର ବିଚାର ଅଛି କିନ୍ତୁ ବୁଝା ପଡୁନାହିଁ ତେବେ ଏପରି ସବୁ କଥା 'ଜ୍ଞାନୀପୁରୁଷ' ଙ୍କୁ ପଚାରି ନେବ । 'ଜ୍ଞାନୀପୁରୁଷ' ସବୁ କିଛି ଜାଣନ୍ତି, ଜଗତର ସବୁ ଜିନିଷ ସେ ଜାଣନ୍ତି ।

**ପ୍ରଶ୍ନକର୍ତ୍ତା :** ଏହି ଜଗତ ଯିଏ ତିଆରି କରିଛି ସେ ସାକାର ଅଟେ ନା ନିରାକାର ?

**ଦାଦାଶ୍ରୀ :** ଯିଏ ଜଗତ(world) ତିଆରି କରିଛି, ସେ ସାକାର ବି ନୁହେଁ ଏବଂ ନିରାକାର ବି ନୁହେଁ । 'The world is the puzzle itself'.

**ପ୍ରଶ୍ନକର୍ତ୍ତା :** ତେବେ ଏହା ଈଶ୍ୱର ହିଁ କରାନ୍ତି ?

**ଦାଦାଶ୍ରୀ :** ଈଶ୍ୱର କରାନ୍ତି ନାହିଁ । ଈଶ୍ୱର ଏଥିରେ ହାତ ମାରନ୍ତି ହିଁ ନାହିଁ । ଈଶ୍ୱର ଯଦି ହାତ ମାରିବେ ତେବେ ତାଙ୍କର ଉତ୍ତରଦାୟିତ୍ୱ, ପୁଣି ଆମର ଉତ୍ତରଦାୟିତ୍ୱ

କିଛି ନାହିଁ, ପୁଣି ଆମେ ମୁକୁଳିଗଲେ । ସେ ଯେଉଁ ଅଲଗା ଶକ୍ତି କାମ କରୁଛି, ତାହା ମୁଁ ବତାଇ ଦିଏ । ଭଗବାନ ତ ଭଗବାନ ହିଁ ଅଟନ୍ତି । ଭଗବାନ ତ କେବେ ସଂସାରରେ ହାତ ମାରି ନାହାନ୍ତି । ସେ ତ ସଂସାର କିପରି ଚାଲୁଅଛି, ସେସବୁ ଦେଖୁଥାନ୍ତି ଏବଂ ନିଜେ ପରମାନନ୍ଦରେ ରୁହନ୍ତି ।

ସଂସାରରେ କୁହନ୍ତି ଯେ ଏସବୁ ଭଗବାନ ତିଆରି କରିଛନ୍ତି ଏବଂ ଅନ୍ୟ ପଟେ କୁହନ୍ତି ଯେ ମୋକ୍ଷ ବି ଅଛି । ଅର୍ଥାତ ମୋକ୍ଷ ବି ଯାଇ ପାରିବା । ଆରେ, ମୋକ୍ଷ ଏବଂ ଭଗବାନ ସବୁ ତିଆରି କରିଛନ୍ତି, ଏ ଦୁଇ ବିରୋଧାଭାଷୀ କଥା ଅଟେ । ଯଦି ମୋକ୍ଷ ହେଉଛି, ତେବେ ଭଗବାନଙ୍କ ଆବଶ୍ୟକତା ନାହିଁ ଆଉ ଭଗବାନ ତିଆରି କରୁଛନ୍ତି ତେବେ ମୋକ୍ଷର ଆବଶ୍ୟକତା ନାହିଁ । ମୋକ୍ଷ ଏବଂ ଭଗବାନ ଉଭୟ ସାଥିରେ ହୋଇପାରିବ ନାହିଁ । ଯଦି ଭଗବାନ ସବୁ ତିଆରି କରିଛନ୍ତି, ତେବେ ସେ ଆମ *ଉପରୀ* (ମାଲିକ) ହୋଇଗଲେ । ମାତ୍ର ଏପରି ନୁହେଁ । ଆମ ଅଣ୍ଡରହ୍ୟାଣ୍ଡ୍ (ଆମ ତଳେ କାମ କରିବାବାଲା) ବି କେହି ନାହିଁ ଏବଂ ଆମ *ଉପରୀ* ବି କେହି ନାହିଁ । ତେବେ ପୁଣି ଏହି ଦୁନିଆ କିଏ ତିଆରି କଲା ? ରଚୟିତା ବିନା ତ ହୁଏ ହିଁ ନାହିଁ ନା ?

**ପ୍ରଶ୍ନକର୍ତ୍ତା :** ଆମ ହିନ୍ଦୁସ୍ତାନରେ ଲୋକେ ତା'କୁ 'ଭଗବାନ' କୁହନ୍ତି ଏବଂ ସବୁ ବୈଜ୍ଞାନିକ ତା'କୁ ପ୍ରକୃତି(nature) କୁହନ୍ତି । ମାତ୍ର କିଛି ଶକ୍ତି ନିଶ୍ଚିତ ଅଛି ଯିଏ ଏସବୁ ସଞ୍ଚାଳନ(control) କରୁଛି ।

**ଦାଦାଶ୍ରୀ :** କଣ୍ଟ୍ରୋଲ୍ ତ କେହି କରେ ହିଁ ନାହିଁ । ଏହା ତ ଖାଲି କମ୍ପ୍ୟୁଟର ଅଟେ । ସେ କମ୍ପ୍ୟୁଟର ହିଁ ଜଗତ ଚଲାଉଛି ।

**ପ୍ରଶ୍ନକର୍ତ୍ତା :** କମ୍ପ୍ୟୁଟରକୁ କିଏ ଚଲାଉଛି ?

**ଦାଦାଶ୍ରୀ :** ତାହାକୁ ଚଲାଇବାର କିଛି ଆବଶ୍ୟକତା ହିଁ ନାହିଁ । ଏମିତି ହିଁ ଚାଲେ । ଏ ସମସ୍ତଙ୍କ ମସ୍ତିଷ୍କ, ତାହା ଛୋଟ କମ୍ପ୍ୟୁଟର ଅଟେ ଆଉ ଯିଏ ଜଗତକୁ ଚଲାଉଛି ତାହା ବଡ଼ କମ୍ପ୍ୟୁଟର ଅଟେ । ଛୋଟ କମ୍ପ୍ୟୁଟରରୁ ସବୁ ହିସାବ ବଡ଼ କମ୍ପ୍ୟୁଟରକୁ ଚାଲିଯାଏ ।

ଏବେ ତ ତୁମେ କହୁଛ ଯେ ମୁଁ ଚଲାଉଛି, ମୁଁ ଏହା କଲି, କିନ୍ତୁ ତୁମର କିଏ ଚଲାଉଛି ?

**ପ୍ରଶ୍ନକର୍ତ୍ତା :** ସେମିତିରେ ତ ମୋର ଭଗବାନ ଚଲାଉଛନ୍ତି ।

**ଦାଦାଶ୍ରୀ :** ଭଗବାନ କରୁଛନ୍ତି, ତେବେ ତୁମେ କାହିଁକି କରୁଛ ? ଯଦି ଭଗବାନ କରୁଛନ୍ତି ତେବେ ତୁମେ କର୍ତ୍ତା ପଦ ଛାଡ଼ି ଦିଅ ଆଉ ଯଦି ତୁମେ କରୁଛ ତେବେ ଭଗବାନଙ୍କ କଥା ଛାଡ଼ିଦିଅ । ଭଗବାନ କହିଛନ୍ତି ଯେ ମୁଁ କର୍ତ୍ତା ନୁହେଁ, ସବୁ ଜୀବ କର୍ତ୍ତା ଅଟନ୍ତି । ଗାଈ-ମଇଁଷି ସମସ୍ତେ ତାଙ୍କ ନିଜର କରନ୍ତି, କାରଣ ସେମାନଙ୍କର ମସ୍ତିଷ୍କ ଅଛି । ସେମାନେ ମସ୍ତିଷ୍କ ଦ୍ୱାରା ଚାଲନ୍ତି । ସବୁ ଜୀବଙ୍କର ମସ୍ତିଷ୍କ ଅଛି । ମସ୍ତିଷ୍କ ଯେପରି ତାଙ୍କୁ ଚଲାଏ, ସେହିପରି ଚାଲନ୍ତି, ବାସ୍ ! ଭଗବାନ ଏଥିରେ ହାତ ମାରନ୍ତି ହିଁ ନାହିଁ । ଭଗବାନ ତ ତୁମକୁ ପ୍ରକାଶ ଦେବେ, ଅନ୍ୟ କିଛି ନୁହେଁ । ଅନ୍ୟସବୁ ଝଂଝଟ୍ ତୁମେ କର । ମସ୍ତିଷ୍କ ତ ଅଛି ସମସ୍ତଙ୍କର । ଗାଈ, ଛେଳି, ମଇଁଷି ସମସ୍ତଙ୍କର ମସ୍ତିଷ୍କ ଅଛି । ସେମାନେ ତଳକୁ ଓହ୍ଲାନ୍ତି, ଉପରକୁ ଚଢ଼ନ୍ତି, ସେମାନେ ମସ୍ତିଷ୍କ ଦ୍ୱାରା ଚାଲନ୍ତି, ଭଗବାନ ଚଲାନ୍ତି ନାହିଁ ।

ସେ scientist (ବୈଜ୍ଞାନିକ) ମାନେ ମୋତେ କୁହନ୍ତି ଯେ God is not creator of this world, (ଭଗବାନ ଏହି ଜଗତର ରଚୟିତା ନୁହଁନ୍ତି) ଏପରି ଆମକୁ ଲାଗୁଛି । କାହିଁକିନା ଏପରି research (ସଂଶୋଧନ) ହୋଇଗଲାଣି ଯେ ଆମେ କିଛି କରି ପାରିବୁ । ତେବେ ମୁଁ କହିଦେଲି ଯେ 'ତୁମେ କିଛି କରି ପାରିବ କିନ୍ତୁ କେଉଁ ପର୍ଯ୍ୟନ୍ତ ? ଏହାର limit (ସୀମା) ଅଛି । କ'ଣ ? ଯେ ବୁଦ୍ଧି ଯେପର୍ଯ୍ୟନ୍ତ ପହଞ୍ଚେ ସେପର୍ଯ୍ୟନ୍ତ ।' ବୁଦ୍ଧିରୁ ଅଧିକ ଆଗକୁ କେହି ଯାଇ ପାରିବ ନାହିଁ । ବୁଦ୍ଧି ଦ୍ୱାରା ଚାଲେ । ଏଠି ଭଗବାନଙ୍କର କିଛି ହାତ ନାହିଁ । ଦେଖ, ଦୁନିଆର ଲୋକେ ମାନନ୍ତି ଯେ ଭଗବାନ ସବୁ ତିଆରି କରିଛନ୍ତି । ଏହା ସମସ୍ତେ, ପିଲାମାନେ ବି ଜାଣନ୍ତି । ସେ କଥା ସତ ନୁହେଁ, ବାସ୍ତବିକ ନୁହେଁ । ତାହା ଲୌକିକ କଥା ଅଟେ । ଲୌକିକ, ତାହା ସାମାନ୍ୟ ଲୋକଙ୍କ ପାଇଁ ଅଟେ । କିନ୍ତୁ ପୁଣି ସନ୍ଧାନ କରିବା ଉଚିତ ଯେ ସତ କଥା କ'ଣ ? ତାହା ସନ୍ଧାନ ତ କରିବା ଉଚିତ ନା ? !

ତୁମକୁ ଯଦି ବାସ୍ତବିକ ଦରକାର ନାହିଁ ଏବଂ viewpoint (ଦୃଷ୍ଟିକୋଣ) ର କଥା ଜାଣିବାକୁ ଥିବ ତେବେ ତାହା ମଧ୍ୟ ବତାଇ ଦେବି ଯେ ଭଗବାନ ହିଁ ସବୁ ତିଆରି କରିଛନ୍ତି ଏବଂ ଭଗବାନ ହିଁ ସବୁ ଚଲାନ୍ତି ଏବଂ ତୁମକୁ କ'ଣ କରିବା ଉଚିତ ତାହା ମଧ୍ୟ ବତାଇ ଦେବି ଯେ ଯଦି କିଛି ଖରାପ ହେଲା ତେବେ ଭଗବାନଙ୍କ ଇଚ୍ଛା କହିଦିଅ । କ୍ଷତି ହେଲା ତେବେ ମଧ୍ୟ ଭଗବାନଙ୍କ ଇଚ୍ଛା ଆଉ ଲାଭ ହେଲା ତେବେ ମଧ୍ୟ ଭଗବାନଙ୍କ ଇଚ୍ଛା । ପିଲାର ଜନ୍ମ ହେଲା ତେବେ ମଧ୍ୟ ଭଗବାନଙ୍କ ଇଚ୍ଛା ଆଉ ପିଲା ଚାଲିଗଲା ତେବେ ମଧ୍ୟ ଭଗବାନଙ୍କ ଇଚ୍ଛା । ଏପରି ସବୁ କହିଲେ ତୁମ life

(ଜୀବନ) ଭଲ ବିତିବ । ଏହା ରିଲେଟିଭ୍ କଥା କହୁଛି । ସେ ରିୟଲ୍ କଥା, ବାସ୍ତବିକ କଥା ତ ବୁଝିପାରିବ ନାହିଁ, ସେଥିପାଇଁ ଏହି କଥା କହୁଛି । ଏତିକି କଥା ଯଦି ବୁଝିଯିବ ଯେ ଯାହା କିଛି ହେଲା ତାହା ସବୁ ଭଗବାନଙ୍କ ଇଚ୍ଛା, ତେବେ ବହୁତ ହୋଇଗଲା ।

## Creation ର କର୍ତ୍ତା କିଏ ?

ତୁମେ ଅଧ୍ୟାତ୍ମ ସମ୍ବନ୍ଧୀୟ ସବୁ ପ୍ରଶ୍ନ ପଚାରି ପାରିବ । ସେ ସବୁର solution (ସମାଧାନ) ମିଳିଯିବ । ତୁମକୁ ପଜଲ୍ ହେଉ ନାହିଁ ? ପ୍ରତିଦିନ, ଦିନସାରା ସବୁ ଲୋକଙ୍କୁ ପଜଲ୍ ହିଁ ହୁଏ । ଏହି ପଜଲ୍‌ରେ ହିଁ ସମସ୍ତେ dissolve ହୋଇ ଗଲେଣି (ଫଁଶି ଗଲେଣି) । ତୁମକୁ ଯଦି କିଛି ପଚାରିବାର ଥିବ ତେବେ ପଚାର, ମୁଁ ସବୁ ସଲ୍ୟୁଶନ୍ ଦେବି । ଏହି world itself puzzle (ଜଗତ ସ୍ୱୟଂ ପ୍ରହେଳିକା) ହୋଇ ଗଲାଣି । ମୁଁ ଏହି ପଜଲ୍‌ର ସଲ୍ୟୁଶନ୍ କରିଛି ଏବଂ ତୁମର ବି ସଲ୍‌ଭ କରିଦେବି ।

God is in every creature whether visible or invisible, not in creation. ଭଗବାନ କ୍ରିଏଚର୍ (creature) ରେ ଅଛନ୍ତି, କ୍ରିଏଶନ୍ (creation) ରେ ନୁହେଁ ।

**ପ୍ରଶ୍ନକର୍ତ୍ତା :** କ୍ରିଏଶନ୍ କେଉଁଠୁ ଆସିଲା ?

**ଦାଦାଶ୍ରୀ :** କ୍ରିଏଶନ୍ ତ ମନୁଷ୍ୟର egoism(ଅହଙ୍କାର) ରୁ ଉତ୍ପନ୍ନ ହୋଇଛି । ସବୁ କିଛି ଅହଙ୍କାରରୁ ଉତ୍ପନ୍ନ ହୋଇଛି, କେହି ତିଆରି କରିବାବାଲା ନାହିଁ । ଜଗତରେ ଛଅ ସନାତନ ତତ୍ତ୍ୱ ଅଛି, ସେମାନଙ୍କର ବିଶେଷ ପରିଣାମରୁ ଏହି ଜଗତ ସୃଷ୍ଟି ହୋଇଯାଇଛି ।

**ପ୍ରଶ୍ନକର୍ତ୍ତା :** ତେବେ ଯଦି ଆମେ କ୍ରିଏଶନ୍ ପାଇଁ ପୁଣି ଭାବିବା ଯେ ପରିଶେଷରେ କ୍ରିଏଶନ୍ କେଉଁଠୁ ହେଲା ? କେଉଁ ତତ୍ତ୍ୱରୁ ଏହାର କ୍ରିଏଶନ୍ ହେଲା ?

**ଦାଦାଶ୍ରୀ :** ତାହା ମୁଁ ଗୋଟିଏ ହିଁ କଥା କହିଛି ଯେ only scientific circumstantial evidence (ବୈଜ୍ଞାନିକ ସଂଯୋଗଯୁକ୍ତ ପ୍ରମାଣ)ରୁ ଏହି ଜଗତ ସୃଷ୍ଟି ହୋଇଯାଇଛି । scientific ଅର୍ଥାତ ଗୂଢ଼ ! ଗୂଢ଼ ଏଭିଡେନ୍ସ, ଗୂଢ଼ ସଂଯୋଗରୁ, ଯାହା ଆମକୁ ବୁଝା ମଧ୍ୟ ପଡ଼େ ନାହିଁ, ଏପରି ସଂଯୋଗରୁ ଏ ସବୁ ହୋଇଯାଇଛି । ତୁମେ ଏଠି ମୋତେ ଆଜି ଭେଟିଲ ତେବେ ତୁମକୁ କ'ଣ ଲାଗୁଛି ? ଯେ ମୁଁ ସେଠାକୁ ଗଲି ଏବଂ ମୋର 'ଜ୍ଞାନୀପୁରୁଷ'ଙ୍କ ସହ ଭେଟ ହେଲା । ଦୁଇଟି ହିଁ

କଥା ତୁମେ କହିବ । ମାତ୍ର ତାହା ପଛରେ ତ hundred କଥା (ଅନେକ ସଂଯୋଗ) ଅଛି । ତୁମେ ତ ଖାଲି ଅହଙ୍କାର କରୁଛ, 'ମୁଁ ଗଲି ।'

**ପ୍ରଶ୍ନକର୍ତ୍ତା :** ତେବେ ପୁଣି ଅହଙ୍କାର ଯଦି କରିବାର ନାହିଁ ତେବେ ଏପରି କହିବୁ ଯେ ଭଗବାନଙ୍କ ଇଚ୍ଛା ଥିଲା ।

**ଦାଦାଶ୍ରୀ :** ନା, ତାହା ଭଗବାନଙ୍କ ଇଚ୍ଛା ନଥିଲା । ଭଗବାନ ଏପରି ଇଚ୍ଛାବାଲା ହୋଇଥାନ୍ତେ, ତେବେ ଭଗବାନଙ୍କୁ ଭିକାରୀ କୁହାଯାଇଥାନ୍ତା । ଭଗବାନ ତ ଭଗବାନ ଅଟନ୍ତି, ବୀତରାଗ ଅଟନ୍ତି । ତାଙ୍କୁ କୌଣସି ଇଚ୍ଛା ହୁଏ ନାହିଁ । ଭଗବାନଙ୍କ ପାଖରେ କୌଣସି ଜିନିଷର ଅଭାବ ନାହିଁ ।

## ଜଗତ ଚଲାଇବାରେ ଇଚ୍ଛା କାହାର ?

**ପ୍ରଶ୍ନକର୍ତ୍ତା :** ଏପରି ଏକ ବିଚାର ଅଛି ଯେ ଭଗବାନଙ୍କ ଇଚ୍ଛା ବିନା ଗୋଟିଏ ପତ୍ର ବି ହଲେ ନାହିଁ ।

**ଦାଦାଶ୍ରୀ :** ତେବେ ଚୋର ଚୋରି କରେ ତାହା ମଧ୍ୟ କ'ଣ ଭଗବାନଙ୍କ ଇଚ୍ଛାରେ କରେ ? ଭଗବାନଙ୍କ ଇଚ୍ଛା ବିନା ଏମାନେ ସବୁ ହଲୁଛନ୍ତି ନା ? ପତ୍ର ତ କ'ଣ ଏ ଗଛ ବି ହଲେ । ଆରେ, ଏ ଭୂକମ୍ପ ବି ହୁଏ । ଏ ସବୁ କ'ଣ ଭଗବାନଙ୍କ ଇଚ୍ଛାରୁ ହୁଏ ?

**ପ୍ରଶ୍ନକର୍ତ୍ତା :** ଯେତିକି ଭଲ ହୁଏ ତାହା କେବଳ ଭଗବାନଙ୍କ ଇଚ୍ଛାରୁ ହୁଏ । ଆଉ ଖରାପ ହୁଏ ତେବେ, ସେଥିରେ ଭଗବାନଙ୍କ ଇଚ୍ଛା ନଥାଏ ।

**ଦାଦାଶ୍ରୀ :** ତେବେ ଖରାପ କାହାର ?

**ପ୍ରଶ୍ନକର୍ତ୍ତା :** ମୋ ମନରେ ଏପରି ଶଙ୍କା ଆସେ ସେଥିପାଇଁ ଏପରି ମାନୁଛି ।

**ଦାଦାଶ୍ରୀ :** ଦେଖ, ଭଗବାନ କେଉଁଠି ରହୁଛନ୍ତି ତାହା ତୁମେ ଜାଣି ନାହଁ, ଭଗବାନ କ'ଣ କରନ୍ତି ତାହା ତୁମେ ଜାଣି ନାହଁ ଏବଂ ତୁମେ କହୁଛ ଯେ ଭଗବାନଙ୍କ ଇଚ୍ଛା ବିନା ଗୋଟିଏ ପତ୍ର ବି ହଲେ ନାହିଁ । ଏସବୁ ପତ୍ର ହଲନ୍ତି, ସେମାନେ କ'ଣ ସବୁ ଭଗବାନଙ୍କ ଇଚ୍ଛା ବିରୁଦ୍ଧରେ ହଲନ୍ତି ? ଭଗବାନଙ୍କୁ ଏପରି କୌଣସି ଇଚ୍ଛା ନାହିଁ । ଇଚ୍ଛାବାଲାଙ୍କୁ ଭଗବାନ ହିଁ କୁହାଯିବ ନାହିଁ । ଭଗବାନ ନିରିଚ୍ଛକ ରୁହନ୍ତି । ମୁଁ 'ଜ୍ଞାନୀ ପୁରୁଷ' ବି ନିରିଚ୍ଛକ ଅଟେ ତେବେ ଭଗବାନ ତ କିଭଳି ନିରିଚ୍ଛକ ହୋଇଥିବେ !

ଭଗବାନଙ୍କ ଇଚ୍ଛା ବିନା ପତ୍ର ବି ହଲେ ନାହିଁ, ସେ କଥା ତୁମ ପାଇଁ ସତ ଏବଂ ଦୁନିଆ ପାଇଁ ମଧ୍ୟ ସତ । ମାତ୍ର ତାହାଠୁ ଆଗକୁ ଯଦି ଯିବା ତେବେ ସେଠି ଏହି ସମସ୍ତ କଥା ମିଛ ସାବ୍ୟସ୍ତ ହେବ । ପ୍ରକୃତ କଥା ତ କିଛି ଅଲଗା ହିଁ ଅଟେ । ସେ ପ୍ରକୃତ କଥା ପୁସ୍ତକରେ ସମାବେଶ ହୋଇ ପାରିବ ନାହିଁ । ତାହା ତ ଅବର୍ଣ୍ଣନୀୟ ଅଟେ, ଅବ୍ୟକ୍ତ ଅଟେ । ଏସବୁ ଲୋକେ କ'ଣ କୁହନ୍ତି ? ପଇସା ରୋଜଗାର କଲେ ତେବେ ମୁଁ ରୋଜଗାର କଲି ଆଉ କ୍ଷତି ହେଲା ତେବେ ଭଗବାନ କରିଦେଲେ, ଏପରି କୁହନ୍ତି । କ୍ଷତି ପାଇଁ ଏପରି କୁହନ୍ତି ନାହିଁ ଯେ 'ମୁଁ କ୍ଷତି କଲି ।' 'ଭଗବାନ ମୋର ବିଗାଡ଼ିଲେ, ମୋ ଭାଗୀଦାର ଭଲ ନୁହେଁ,' ଏପରି କୁହନ୍ତି । ନହେଲେ କହିବେ, 'ମୋ ଗ୍ରହ ଭଲ ନାହିଁ, ଆମ ପୁଅର ବିବାହ କଲୁ ତେବେ ବୋହୂ ଆମ ଘରକୁ ଆସିଲା, ସେହି ଦିନରୁ ଆମେ ସବୁ ଦୁଃଖୀ ଦୁଃଖୀ ହୋଇଗଲୁ, ତା' ପାଦ ଭଲ ନୁହେଁ ।'

କେତେ କେତେ ଆକ୍ଷେପ ଦିଅନ୍ତି ! ଏପରି ଆକ୍ଷେପ ଦିଅନ୍ତି ଯେ ପୁଣି ଆଉ ମଣିଷ ଜନ୍ମ ବି ମିଳେ ନାହିଁ । ଏପରି ନହେବା ଉଚିତ । କାହା ଉପରେ ଆକ୍ଷେପ ନଦେବା ଉଚିତ । କାହାରିକୁ ଦୁଃଖ ନହେବା ଉଚିତ । ଯେବେ ପୁଣ୍ୟର ଉଦୟ ହୁଏ, ସେତେବେଳେ ତୁମେ କିଛି ବି କର ତେବେ ସବୁ ଭଲ-ଭଲ ହିଁ ହେବ ଆଉ ପାପର ଉଦୟ ଯେତେବେଳେ ଆସେ ସେତେବେଳେ ଯଦି ଭଲ କର ତେବେ ମଧ୍ୟ ଖରାପ ହୋଇଯିବ ।

ଭଗବାନ ଏପରି ପ୍ରେରକ ହୁଅନ୍ତି ନାହିଁ । ଯଦି ଭଗବାନ ପ୍ରେରକ ହୋଇଥାନ୍ତେ ତେବେ ଚୋର ବି ଏପରି କୁହନ୍ତେ ଯେ ଭଗବାନ ଆମକୁ ପ୍ରେରଣା ଦେଇଛନ୍ତି । ଭଗବାନ ଯଦି ଚୋରି କରିବା ପାଇଁ ପ୍ରେରିତ କରୁଥିବେ ତେବେ ତାଙ୍କୁ ଭଗବାନ କୁହାଯିବ ହିଁ ନାହିଁ । ଯଦି ଦାନ ଦେବା ପାଇଁ ପ୍ରେରିତ କରନ୍ତି ତେବେ ତାଙ୍କୁ ଭଗବାନ କୁହାଯିବ ନାହିଁ । କ'ଣ ଯିଏ ଚୋରି କରିବା ପାଇଁ ପ୍ରେରିତ କରନ୍ତି, ଦାନ ଦେବା ପାଇଁ ପ୍ରେରିତ କରନ୍ତି ତାଙ୍କୁ ଭଗବାନ କୁହାଯିବ ? କରାନ୍ତି, ତାଙ୍କୁ ଭଗବାନ କୁହାଯିବ ? କିନ୍ତୁ ଲୋକେ ଭଗବାନଙ୍କୁ ପ୍ରେରକ କହିଲେ ।

ଲୋକମାନେ ତ କେତେ କ'ଣ କହିଲେ ଭଗବାନଙ୍କୁ । କେହି କର୍ମର ଫଳ ଦେବାବାଲା କହିଲେ । କର୍ମ କରୁଛି ମୁଁ ଆଉ ଫଳ ଭଗବାନ ଦେବେ ? ନହେଲେ, ଭଲ କଲ ତେବେ ଭଗବାନ କଲେ ଏବଂ ଖରାପ କଲ ତେବେ ମଧ୍ୟ ଭଗବାନ କଲେ, ଏପରି କହି ଦିଅ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ମୁଁ ଏପରି କହୁଛି ଯେ ଭଲ ତ ଭଗବାନ କରାନ୍ତି ଆଉ ଖରାପ ଶୈତାନ କରାଏ ।

**ଦାଦାଶ୍ରୀ :** କେହି ଶୈତାନ ଦୁନିଆରେ ନାହିଁ । ଦୁଇ ପ୍ରକାରର ବୁଦ୍ଧି ଥାଏ । ଏକ ସଦ୍‌ବୁଦ୍ଧି ଏବଂ ଆଉ ଏକ କୁବୁଦ୍ଧି । କୁବୁଦ୍ଧିକୁ ଶୈତାନ କୁହନ୍ତି ଏବଂ ସଦ୍‌ବୁଦ୍ଧିକୁ ଭଗବାନ କୁହନ୍ତି ।

**ପ୍ରଶ୍ନକର୍ତ୍ତା :** ବିଲକୁଲ ଠିକ କଥା ।

**ଦାଦାଶ୍ରୀ :** ହଁ, ଭଗବାନ କିଛି କରନ୍ତି ନାହିଁ । ଭଗବାନ ତ ବୀତରାଗ ଅଟନ୍ତି । ଭଗବାନ ଏଥିରେ ହାତ ମାରନ୍ତି ହିଁ ନାହିଁ । କେବଳ ତାଙ୍କର ଉପସ୍ଥିତି ଦ୍ୱାରା ସବୁ ଚାଲୁଅଛି । ସେ ଉପସ୍ଥିତ ନଥାନ୍ତେ ତେବେ ଚାଲନ୍ତା ନାହିଁ । ଏହି ଶରୀରରେ ତାଙ୍କର ଉପସ୍ଥିତି (Presence) ଅଛି, ସେଥିପାଇଁ ଏସବୁ ଚାଲୁଅଛି । ସେ କିଛି କରନ୍ତି ନାହିଁ । ସେ ତ କେବଳ light (ପ୍ରକାଶ) ଦିଅନ୍ତି । ଯାହାକୁ ଚୋରି କରିବାର ଥିବ ତା'କୁ ମଧ୍ୟ ପ୍ରକାଶ ଦିଅନ୍ତି ଏବଂ ଯାହାକୁ ଦାନ ଦେବାର ଥିବ ତା'କୁ ମଧ୍ୟ ପ୍ରକାଶ ଦିଅନ୍ତି । ଭଗବାନ ଅନ୍ୟ କିଛି କରନ୍ତି ନାହିଁ ।

## ଭଗବାନ, ଇଚ୍ଛାଶକ୍ତିବାଲା ?

ମୋତେ କୌଣସି ଜିନିଷର ଆବଶ୍ୟକତା ନାହିଁ । ମୁଁ କୌଣସି ଜିନିଷର ଇଚ୍ଛା କରି ନାହିଁ, କିନ୍ତୁ ମୋ ପାଖକୁ ସବୁ ଜିନିଷ ଆପେ ଆପେ ଆସିଯାଏ ।

**ପ୍ରଶ୍ନକର୍ତ୍ତା :** ତାହା ମଧ୍ୟ କରି ଦେଖିଲି ଯେ କୌଣସି ଜିନିଷର ଇଚ୍ଛା କରିବ ନାହିଁ ତେବେ ସେ ନିଜେ ହିଁ ଚାଲି ଆସିବ, ତଥାପି ଆସୁ ନାହିଁ ।

**ଦାଦାଶ୍ରୀ :** ହଁ, ତାହା ଏଥିପାଇଁ ଯେ କ୍ରେଡ଼ିଟ୍ ସାଇଡ୍ (ପୁଣ୍ୟର ଖାତା)ରେ କିଛି ତ ଥିବା ଦରକାର ନା ? ମୁଁ ଇଚ୍ଛା କରେ ନାହିଁ ତଥାପି ସବୁ ଆସେ, ତେବେ ମୋ କ୍ରେଡ଼ିଟ୍ ସାଇଡ଼(ପୁଣ୍ୟ) କେତେ ବଡ଼ !

ଇଚ୍ଛା କରିବା ବାଲାକୁ ଶାସ୍ତ୍ର କ'ଣ କୁହେ ? ତା'କୁ ଭିକାରୀ କୁହେ । କିଛି ମଣିଷ ପଇସାର ଭିକାରୀ, କିଛି ସ୍ତ୍ରୀ-ବିଷୟର ଭିକାରୀ, କିଛି ମାନର ଭିକାରୀ, କିଛି କୀର୍ତ୍ତିର ଭିକାରୀ, କେହି ମନ୍ଦିର ତିଆରି କରିବାର ଭିକାରୀ । ସବୁ ଭିକ, ଭିକ, ଭିକ ହିଁ ଅଟେ ।

ମୋତେ କୌଣସି ପ୍ରକାରର ଭିକ ନାହିଁ, ତେଣୁ ସାରା ଜଗତର ଲଗାମ ମୋ ପାଖରେ ଅଛି । ଯାହାକୁ କୌଣସି ପ୍ରକାରର ବି ଇଚ୍ଛା ନାହିଁ, ତା'କୁ ସେହି ପଦ ମିଳିଯାଏ । ଯେଉଁ ପଦ ମୋତେ ମିଳିଛି ସେହି ପଦ ତୁମକୁ ବି ମିଳି ପାରିବ । କିନ୍ତୁ ଭିକବାଲାକୁ ମିଳେ ନାହିଁ ।

**ପ୍ରଶ୍ନକର୍ତ୍ତା :** ଆମେ ଭିକ ମାଗିବୁ ତେବେ ମଧ୍ୟ ମିଳିବ ନାହିଁ ଆମକୁ ।

**ଦାଦାଶ୍ରୀ :** ହଁ, ତାହାପାଇଁ ତୁମ କ୍ରେଡ଼ିଟ୍ ସାଇଡ୍ ନାହିଁ । ପ୍ରଥମେ କ୍ରେଡ଼ିଟ୍ ସାଇଡ୍ ଦରକାର । ଯେତେ କ୍ରେଡ଼ିଟ୍ ଅଛି, ସେତିକି ତୁମକୁ କୌଣସି ଅସୁବିଧା ନାହିଁ । ଭଗବାନଙ୍କୁ ଇଚ୍ଛା ହୁଏ ନାହିଁ । ଭଗବାନ ତ ଭଗବାନ ଅଟନ୍ତି ।

**ପ୍ରଶ୍ନକର୍ତ୍ତା :** ତେବେ ଇଚ୍ଛାଶକ୍ତି, କ୍ରିୟାଶକ୍ତି, ଜ୍ଞାନଶକ୍ତି ତାହା କାହାର ?

**ଦାଦାଶ୍ରୀ :** ସେ ସବୁ ଭଗବାନଙ୍କର ନୁହେଁ । ଏ କୌଣସି ଶକ୍ତି ଭଗବାନଙ୍କ ଠାରେ ନାହିଁ । ଭଗବାନଙ୍କ ଠାରେ ଇଚ୍ଛାଶକ୍ତି ବି ନାହିଁ, କ୍ରିୟାଶକ୍ତି ବି ନାହିଁ ଏବଂ ଜ୍ଞାନଶକ୍ତି ବି ନାହିଁ । ତିନୋଟି ଯାକ ଶକ୍ତି ଭଗବାନଙ୍କ ଠାରେ ନାହିଁ । ଭଗବାନ ତ ଖାଲି ବିଜ୍ଞାନଶକ୍ତି ଅଟନ୍ତି, ବାସ୍ !

## ଅନ୍ତ, ଦୁନିଆର ନା 'ବ୍ୟବହାର'ର ?

**ପ୍ରଶ୍ନକର୍ତ୍ତା :** ଏହି ଦୁନିଆ କିପରି ସୃଷ୍ଟି ହେଲା ? ସବୁଠୁ ପ୍ରଥମେ କାହାର ଜନ୍ମ ହୋଇଥିଲା ?

**ଦାଦାଶ୍ରୀ :** ପ୍ରଥମ କେହି ନାହିଁ । ଏମିତି ହିଁ ଚାଲୁଥିଲା, ଅନାଦିରୁ ଚାଲୁଅଛି । ପ୍ରଥମ ବୋଲି କେହି ନଥିଲା । ଯଦି ପ୍ରଥମ ଅଛି, ତେବେ ତାହାର ଅନ୍ତ ବି ଥାଏ । କିନ୍ତୁ ଦୁନିଆର ଆଦି ମଧ୍ୟ ନାହିଁ ଏବଂ ଅନ୍ତ ମଧ୍ୟ ନାହିଁ ।

**ପ୍ରଶ୍ନକର୍ତ୍ତା :** ଯେପରି କୌଣସି ଏକ ଜିନିଷ ଜନ୍ମ (ସୃଷ୍ଟି) ହେଲା ତେବେ ତାହାର ବୀଜ ତ ପ୍ରଥମେ ଥିବ ନା ଦୁନିଆରେ ?

**ଦାଦାଶ୍ରୀ :** ସେ କଥା ବୁଦ୍ଧିଜନ୍ୟ ଅଟେ, ଜ୍ଞାନଜନ୍ୟ ନୁହେଁ । ଖୁଦାଙ୍କ ଜ୍ଞାନରେ ପ୍ରଥମ ବୋଲି କେହି ବି ନଥିଲା ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଖୁଦା ମାଟି, ପାଣି, ଅଗ୍ନି ଏବଂ ପବନ ଏହି ଚାରିକୁ ମିଶାଇ ମନୁଷ୍ୟ ଜନ୍ମ କରିଛନ୍ତି ନା ?

**ଦାଦାଶ୍ରୀ :** ନା, ଖୁଦା ଯଦି ଏପରି ତିଆରି କରିବେ ତେବେ ସେ ତ ମଜୁରିଆ ହୋଇଗଲେ, ପୁଣି ମଜୁରିଆ ଆଉ ତାଙ୍କ ମଧ୍ୟରେ କ'ଣ ଫରକ ? ଓଲିଆ(ସନ୍ଥ) ବି ମଜୁରି କରୁ ନାହାନ୍ତି ।

**ପ୍ରଶ୍ନକର୍ତ୍ତା :** ତେବେ ପୁଣି ଏହି ଦୁନିଆ କ'ଣ ?

**ଦାଦାଶ୍ରୀ :** ତୁମେ କାହାକୁ ଦୁନିଆ କହୁଛ ? ଆଖିକୁ ଦେଖାଯାଉଛି, କାନରେ ଶୁଣିବାକୁ ମିଳୁଛି, ନାକ ଦ୍ୱାରା, ଜିଭ ଦ୍ୱାରା ଏବଂ ସ୍ପର୍ଶ ଦ୍ୱାରା, ତୁମ ପାଞ୍ଚ ଇନ୍ଦ୍ରିୟ ଦ୍ୱାରା ତୁମକୁ ଯାହା ଅନୁଭବ ହେଉଛି, ତାହାକୁ ତୁମେ ଦୁନିଆ କହୁଛ ? ସେସବୁ ରିଲେଟିଭ୍ ଅଟେ ଏବଂ All these relatives are temporary adjustments.

**ପ୍ରଶ୍ନକର୍ତ୍ତା :** ଏହି ଦୁନିଆର ଅନ୍ତ ଅଛି କି ?

**ଦାଦାଶ୍ରୀ :** ନା, ଏହି ଦୁନିଆର ଅନ୍ତ କେବେ ଆସିବ ନାହିଁ । ମାତ୍ର ତୁମେ ସମସରଣ ମାର୍ଗରେ ଚାଲୁଅଛ, ତାହାର ଅନ୍ତ ଆସିଯିବ । ଯେତେ ମାଇଲ ତୁମେ ଚାଲୁଛ, ସେତିକି ମାଇଲ କମ ହୋଇଯାଏ ଏବଂ ଏହାର ଅନ୍ତ ବି ଅଛି ।

**ପ୍ରଶ୍ନକର୍ତ୍ତା :** ସେ ଅନ୍ତରେ କ'ଣ ଅଛି ?

**ଦାଦାଶ୍ରୀ :** ଅନ୍ତରେ ତୁମେ ପରମାନେଣ୍ଟ୍ (ଅବିନାଶୀ) ହୋଇପାରିବ । ଏବେ ତ ତୁମେ ଟେମ୍ପରାରୀ (ବିନାଶୀ) ଅଟ, କାହିଁକିନା 'ମୁଁ ★ରବିନ୍ଦ୍ର ଅଟେ, ମୁଁ ଡକ୍ଟର ଅଟେ' ଏପରି ସବୁ ତୁମକୁ ରଙ୍ଗ୍ ବିଲିଫ୍ (ଭ୍ରାନ୍ତ ମାନ୍ୟତା) ଅଛି ।

**ପ୍ରଶ୍ନକର୍ତ୍ତା :** ମୃତ୍ୟୁ ପରେ କେଉଁଠିକୁ ଯାଆନ୍ତି ?

**ଦାଦାଶ୍ରୀ :** ଏଠି ଏବେ ଏଗାର ମାଇଲରେ ଅଛି, ସେ ବାର ମାଇଲକୁ ଯାଏ । ଏଠି ଦଶ ମାଇଲରେ ଅଛି, ସେ ଏଗାର ମାଇଲକୁ ଯାଏ । ଅନ୍ୟ କେଉଁ ଜାଗାକୁ ଯାଏ ନାହିଁ, ସେହି ଗୋଟିଏ ହିଁ ରାସ୍ତା । ଯେତିକି ରାସ୍ତା ସେ ପାର କଲା, ସେତିକି ଆଗକୁ ଚାଲିଯାଏ । ସେ ଆଗକୁ ହିଁ ବଢ଼େ । ଯେବେ ଏହି ରାସ୍ତା ପୂରା ହୁଏ, ସେତେବେଳେ ସେ ସ୍ୱତନ୍ତ୍ର ହୋଇଯାଏ । ସେପର୍ଯ୍ୟନ୍ତ ସ୍ୱତନ୍ତ୍ର ନୁହେଁ, ପରବଶ ହିଁ ରୁହେ ।

ତୁମର ବୋସ୍ (ମାଲିକ) ଅଛି ? ଯେପର୍ଯ୍ୟନ୍ତ ବୋସ୍ ଥାଏ ସେପର୍ଯ୍ୟନ୍ତ ଜୀବନରେ କେତେ ଅସୁବିଧା ରୁହେ ? କେତେ ପରବଶତା ରୁହେ ?

**ପ୍ରଶ୍ନକର୍ତ୍ତା :** ପସନ୍ଦ ତ ନୁହେଁ ।

★ ପାଠକେ ରବିନ୍ଦ୍ର ସ୍ଥାନରେ ନିଜ ନାମ ପଢ଼ନ୍ତୁ

**ଦାଦାଶ୍ରୀ :** ହଁ, ତେବେ ଇଣ୍ଡିପେଣ୍ଡେଣ୍ଟ୍ ଲାଇଫ୍ (ସ୍ୱତନ୍ତ୍ର ଜୀବନ) ଦରକାର । ଏହି ଜଗତ କେହି ତିଆରି କରିନାହିଁ । The world is the puzzle itself. God has not puzzled this world at all ! ଆପେ ଆପେ, ସ୍ୱୟଂ ପ୍ରହେଳିକା ହୋଇ ଯାଇଛି । ତୁମକୁ ପଜ୍ଲ୍ ହୁଏ ନା ନାହିଁ ? କେହି ଯେବେ କୁହେ ଯେ 'ରବିନ୍ଦ୍ର ଭଲ ଲୋକ ନୁହେଁ ।' ଏତିକି ଶୁଣିବା ମାତ୍ରେ ତୁମକୁ କିଛି ପଜ୍ଲ୍ ହୋଇଯାଏ ?

**ପ୍ରଶ୍ନକର୍ତ୍ତା :** ହୁଏ ।

**ଦାଦାଶ୍ରୀ :** କାହିଁକି ପଜ୍ଲ୍ ହୁଏ ? କାରଣ ଏହି ଜଗତ ସ୍ୱୟଂ ପଜ୍ଲ୍ (ପ୍ରହେଳିକା) ଅଟେ ।

## ଦୁର୍ଘଟଣା କ'ଣ ?

**ପ୍ରଶ୍ନକର୍ତ୍ତା :** ଯଦି ଭଗବାନଙ୍କ ଇଚ୍ଛା ମାନିନେଲୁ ତେବେ ଦୁର୍ଘଟଣା ଭଳି କିଛି ନାହିଁ ।

**ଦାଦାଶ୍ରୀ :** ହଁ, କିନ୍ତୁ ଦୁର୍ଘଟଣା ହୁଏ ?

ଏହି ଜଗତରେ କେବେ ଦୁର୍ଘଟଣା ହୁଏ ହିଁ ନାହିଁ । ଦୁର୍ଘଟଣା ହୁଏ, ତାହା ନ ବୁଝିବାବାଲା ସାମାନ୍ୟ ବ୍ୟକ୍ତି କୁହେ । କିନ୍ତୁ ବୁଝିବାବାଲା ବ୍ୟକ୍ତି କୁହେ ନାହିଁ ଯେ, 'ଆରେ, ଦୁର୍ଘଟଣା ହୋଇଗଲା ! !' ଯିଏ ଅଳ୍ପ ବୁଝେ, ସେ କୁହେ ଯେ ଏହା ଦୁର୍ଘଟଣା ଅଟେ, ମାତ୍ର ବୁଝିବାବାଲା ବ୍ୟକ୍ତି ତ କେବେ କହିବ ନାହିଁ । ଦୁର୍ଘଟଣା ତ କେବେ ହୁଏ ହିଁ ନାହିଁ । ତୁମକୁ କ'ଣ ଲାଗୁଛି, ଦୁର୍ଘଟଣା ହୁଏ କେବେ ?

ଦୁର୍ଘଟଣା କାହାକୁ କୁହନ୍ତି ? An incident has so many causes and an accident has too many causes.(ଏକ ଘଟଣାର ଅନେକ କାରଣ ଥାଏ ଏବଂ ଏକ ଦୁର୍ଘଟଣାର ଅସଂଖ୍ୟ କାରଣ ଥାଏ ।) ତେବେ ଦୁର୍ଘଟଣା (ସାଧାରଣତଃ) କେବେ ହୁଏ ହିଁ ନାହିଁ । ଦୁର୍ଘଟଣା, ତାହାର ତ କଜେଜ୍ (କାରଣ) ଅଧିକ ଥାଏ ଏବଂ 'ଇନ୍ସିଡେଣ୍ଟ୍', ତାହାର କମ କଜେଜ୍ ଥାଏ । ଦିନସାରା ଇନ୍ସିଡେଣ୍ଟ୍(ଘଟଣା) ହିଁ ହେଉଥାଏ । କେବେ କେବେ ଅଧିକ କଜେଜ୍ ହୋଇଯାଏ ତାହାକୁ ଆକ୍ସିଡେଣ୍ଟ୍ କୁହନ୍ତି ।

ମୁମ୍ବାଇରେ ହାଇ-ୱେ କ୍ରସ୍ କରିବା ସମୟରେ କୌଣସି ବ୍ୟକ୍ତି ସାମ୍ନାରେ ଯଦି

ଗାଡ଼ି ଆସିଯାଏ ତେବେ ଗାଡ଼ି ଡ୍ରାଇଭର କ'ଣ କହିବ ଯେ ମୁଁ ଚେଷ୍ଟା କରି ତା'କୁ ବଞ୍ଚେଇ ଦେଲି । ମାତ୍ର ସେ ବ୍ୟକ୍ତି କୁହେ ଯେ ନା, ମୁଁ ହିଁ ଏମିତି ଡିଆଁ ମାରିଲି ଯେ ବଞ୍ଚିଗଲି । ଏହି ଉଭୟ କଥା ଭୁଲ ଅଟେ । ଟିକିଏ ଆଗକୁ ଯାଇ ସେହି ଡ୍ରାଇଭର ଅନ୍ୟ ଏକ ବ୍ୟକ୍ତିର ଗୋଡ଼ ଭାଙ୍ଗି ଦିଏ । ଏପରି କିଭଳି ବଞ୍ଚାଇବାବାଲା ଆସିଲା!!!

(ସାଧାରଣତଃ) ଆକ୍ସିଡେଣ୍ଟ୍ କେବେ ହୁଏ ହିଁ ନାହିଁ । ଏହା ତ ଲୋକଙ୍କୁ ଜଣା ପଡ଼େ ନାହିଁ ସେଥିପାଇଁ କୁହନ୍ତି ଯେ ଏହା ଆକ୍ସିଡେଣ୍ଟ୍ ହୋଇଗଲା । ଦିନସାରା ଇନ୍ସିଡେଣ୍ଟ୍ ହିଁ ହେଉଥାଏ ।

## ଏହି ଦୁନିଆ, ଯୋଜନାବଦ୍ଧ ନା ଆକ୍ସିଡେଣ୍ଟ୍ ?

ମନୁଷ୍ୟ କେତେ ବି ଅହଙ୍କାର କରୁ, ମାତ୍ର ନେଚର୍ (ପ୍ରକୃତି) ର ଯେଉଁ ପ୍ଲାନିଙ୍ଗ୍ (ଯୋଜନା) ଅଛି, ତାହାକୁ ବଦଳାଇବାବାଲା କେହି ନାହିଁ । ଯଦି ପ୍ଲାନିଙ୍ଗ୍ ବଦଳି ପାରୁଥାନ୍ତା ତେବେ ଦୁନିଆରେ ଜଣେ ବି ଲେଡ଼ୀ(ସ୍ତ୍ରୀ) ରହିବେ ନାହିଁ । ସବୁ ସ୍ତ୍ରୀମାନେ ପୁରୁଷ ହୋଇଯିବେ । କିନ୍ତୁ କାହା ହାତରେ କିଛି ବି ନାହିଁ ।

ନେଚର୍ର ଯାହା ପ୍ଲାନିଙ୍ଗ୍, ସେହି ପ୍ଲାନିଙ୍ଗ୍ ହିସାବରେ ସବୁ ହୁଏ । ନେଚର୍ର ପ୍ଲାନିଙ୍ଗ୍ କ'ଣ ଯେ ହିନ୍ଦୁସ୍ତାନରେ ଏତିକି ସ୍ତ୍ରୀ ଦରକାର, ଏତିକି ପୁରୁଷ ଦରକାର, ଏତିକି ବାଳ କାଟିବାବାଲା ଦରକାର, ଏତିକି ବଢ଼େଇ ଦରକାର, ଏତିକି କମାର ଦରକାର । ପ୍ରତ୍ୟେକ ଜିନିଷର ଏପରି ପରିମାଣ ପ୍ଲାନିଙ୍ଗ୍ରେ ଅଛି । ତାହା କେହି ବଦଳାଇ ପାରିବ ନାହିଁ ।

**ପ୍ରଶ୍ନକର୍ତ୍ତା :** ଏହା କିଏ ଡିସାଇଡ୍ (ନିର୍ଣ୍ଣୟ) କରେ ?

**ଦାଦାଶ୍ରୀ :** Only scientific circumstantial evidence (କେବଳ ବୈଜ୍ଞାନିକ ସଂଯୋଗଯୁକ୍ତ ପ୍ରମାଣ) ଅଟେ । ହିନ୍ଦୁସ୍ତାନରେ ଏତିକି ସୈନିକ ଦରକାର, ଏତିକି ପୋଲିସବାଲା ଦରକାର, ନହେଲେ ପୋଲିସ ଚାକିରୀ କେହି କରନ୍ତା ହିଁ ନାହିଁ । ଏତିକି ରାଜମିସ୍ତ୍ରୀ ଦରକାର, ଏତିକି ଓକିଲ ଦରକାର, ଏତିକି ଡକ୍ଟର ଦରକାର । ଡକ୍ଟରର ରୋଜଗାର ବହୁତ ଭଲ, ତେବେ ସମସ୍ତେ ଡକ୍ଟର ହୋଇଯାନ୍ତେ । ମାତ୍ର ସମସ୍ତେ ଡକ୍ଟର ହୋଇ ପାରିବେ ନାହିଁ । ଯାହା ପ୍ରକୃତିର ପ୍ଲାନିଙ୍ଗ୍ରେ ନାହିଁ, ତାହା କେହି କରି ପାରିବେ ହିଁ ନାହିଁ । ପ୍ରକୃତିର ପ୍ଲାନିଙ୍ଗ୍ରେ କେହି ପରିବର୍ତ୍ତନ କରିପାରିବେ ନାହିଁ । ସ୍ୱୟଂ ଭଗବାନ ବି ପରିବର୍ତ୍ତନ କରିପାରିବେ ନାହିଁ । ପ୍ଲାନିଙ୍ଗ୍

ମାନେ ପ୍ଲାନିଙ୍ଗ୍!! ସେହି ପ୍ଲାନିଙ୍ଗ୍‌ରେ ସବୁକିଛି ଅଛି। ପ୍ରକୃତିର ପ୍ଲାନିଙ୍ଗ୍ ଏପରି ଅଟେ ଯେ ଦୁନିଆରେ ପ୍ରତ୍ୟେକ ଜିନିଷ ଅଛି। ମାତ୍ର ଯଦି ନିଜ ପ୍ରାରବ୍ଧରେ ନାହିଁ, ତେବେ ମିଳେ ନାହିଁ। ନହେଲେ ପ୍ରତ୍ୟେକ ଜିନିଷ, ଯେତିକି ତୁମର ଅଟେ ସେତିକି ଏଇଠି ହିଁ ଅଛି। ପ୍ରକୃତିର ପ୍ଲାନିଙ୍ଗ୍ ବହୁତ ସୁନ୍ଦର। ସେଥିରେ କେବେ କେହି କମ-ବେଶୀ କରିପାରିବେ ନାହିଁ ଏବଂ ସେହି ପ୍ଲାନିଙ୍ଗ୍‌ରେ ହିଁ ରହିବାକୁ ପଡ଼େ। ମାତ୍ର ଯଦି ଅହଙ୍କାର କଲ ତେବେ ତାହାର ଦୁଃଖ ହୁଏ। ଯିଏ ଅହଙ୍କାର କରେ, ତାହା ବଦଳରେ ତା'କୁ ଦୁଃଖ ଆସେ। ତଥାପି ପ୍ଲାନିଙ୍ଗ୍‌ରେ ତ କିଛି ବି ପରିବର୍ତ୍ତନ ହେବ ନାହିଁ।

**ପ୍ରଶ୍ନକର୍ତ୍ତା :** ଏବେ ଏୟର୍ ଇଣ୍ଡିଆ (Air India) ର ପ୍ଲେନ୍ (ବିମାନ) ଖସି ପଡ଼ିଲା, ସେଥିରେ ୨୧୫ ଲୋକ ମରିଗଲେ ତେବେ ସେଥିରେ ବି କିଛି ପ୍ଲାନିଙ୍ଗ୍ ଥିବ?

**ଦାଦାଶ୍ରୀ :** ହଁ, ସବୁ ପ୍ଲାନିଙ୍ଗ୍ ହିଁ ଅଟେ। ପ୍ଲାନିଙ୍ଗ୍‌ରୁ ବାହାରେ କିଛି ଚାଲେ ହିଁ ନାହିଁ। ପ୍ଲାନିଙ୍ଗ୍‌ରୁ ବାହାରେ କୌଣସି ଜିନିଷ ହୁଏ ନାହିଁ। ଏକ୍‌ଜାକ୍ଟ ପ୍ଲାନିଙ୍ଗ୍ ଅଟେ! ଏପରି ଆକ୍ସିଡେଣ୍ଟ୍ ଦେଖି ମନୁଷ୍ୟଙ୍କୁ ଆଶ୍ଚର୍ଯ୍ୟ ହୁଏ ଯେ, ଏହା କ'ଣ ହେଲା, ଏହା କ'ଣ ହୋଇଗଲା? ମାତ୍ର ପଶୁପକ୍ଷୀଙ୍କୁ କିଛି ଆଶ୍ଚର୍ଯ୍ୟ ହୁଏ ନାହିଁ। କେତେ ଗାଈ ଦେଖନ୍ତି, ଗଧ ଦେଖନ୍ତି, କିନ୍ତୁ ସେମାନଙ୍କୁ କିଛି ଆଶ୍ଚର୍ଯ୍ୟ ହୁଏ ନାହିଁ। ସବୁ ସେମିତି ଚାଲୁଥାନ୍ତି। ଗାଈ, ଗଧ, ଏମାନେ ସବୁ ମାନନ୍ତି ଯେ ପ୍ରକୃତିର ପ୍ଲାନିଙ୍ଗ୍ ଅନୁସାରେ ହୋଇଛି, ଏଥିରେ କ'ଣ ଦେଖିବା!

## ଜ୍ୟୋତିଷଜ୍ଞାନର ସତ୍ୟତା

**ପ୍ରଶ୍ନକର୍ତ୍ତା :** ଆପଣ କୃପା କରିବେ ତେବେ ମୋତେ ଜ୍ୟୋତିଷର ଅର୍ଥ କ'ଣ ତାହା ବୁଝିବାର ଥିଲା।

**ଦାଦାଶ୍ରୀ :** ଏହି ଦୁନିଆକୁ ଭଗବାନ ଚଲାନ୍ତି ନାହିଁ, ଅନ୍ୟ ଶକ୍ତି ଚଲାଏ। ଏଣୁ ଆମ ଜ୍ୟୋତିଷଜ୍ଞାନ କରେକ୍ଟ (ସତ୍ୟ) ଅଟେ। ଯଦି ଭଗବାନ ଚଲାଉଥାନ୍ତେ ଏବଂ କୌଣସି ବ୍ୟକ୍ତି ବହୁତ ଭକ୍ତି କରିଥାନ୍ତା ତେବେ ଜ୍ୟୋତିଷ ଭୁଲ ପ୍ରମାଣିତ ହୋଇଯାନ୍ତା। ଜ୍ୟୋତିଷ ତ ବିଲକୁଲ ଠିକ ଅଟେ, କିନ୍ତୁ ଜାଣିବାବାଲାଙ୍କର ଅଭାବ ଅଛି। ସେମାନେ ପୁରା-ପୁରି ଜାଣନ୍ତି ନାହିଁ। ଭାବାଭାବ ସବୁ ଯେଉଁ ଅଛି ନା, ସେସବୁ ଏମାନଙ୍କୁ ବୁଝା

ପଡ଼େ ନାହିଁ । ସ୍ପଷ୍ଟରୂପେ ବୁଝା ପଡ଼େ ନାହିଁ । ନହେଲେ ଜ୍ୟୋତିଷ ତ ଠିକ ଅଟେ, ତାହା ତ ବିଜ୍ଞାନ ଅଟେ ।

ପୁରା ଦୁନିଆର ସବୁ ଲୋକ 'ନଟୁ' (Top) ଅଟନ୍ତି । ସେ ନିଜେ କୌଣସି କର୍ମ ବାନ୍ଧି ପାରିବ ହିଁ ନାହିଁ । ଯଦି ନିଜେ କର୍ମ ବାନ୍ଧୁଥାନ୍ତା, ତେବେ ଏପରି ବାନ୍ଧିବ ନାହିଁ । ତାହା ପଛରେ ନିମିତ୍ତ ଅଛି । ଏହି ଜଗତରେ ଝାଡ଼ା ଯିବାର (ସ୍ୱତନ୍ତ୍ର) ଶକ୍ତି କାହାକୁ ବି ନାହିଁ । ଯେତେବେଳେ ତା'ର ବନ୍ଦ ହୋଇଯିବ ସେତେବେଳେ ଜଣା ପଡ଼ିବ ଯେ ଆମ ନିଜ ଶକ୍ତି ନଥିଲା । ସେଥିରେ ଡାକ୍ତରର ଆବଶ୍ୟକତା ପଡ଼େ ।

**ପ୍ରଶ୍ନକର୍ତ୍ତା :** ମୁଁ ଏପରି ମାନେ ଯେ ଯେଉଁ ଅନ୍ୟ ଶକ୍ତି ଚଲାଏ, ତାହା କ'ଣ ଗ୍ରହମାନ ଶକ୍ତି ଅଟେ ?

**ଦାଦାଶ୍ରୀ :** ଏ ସବୁ ପାର୍ଲ୍ୟାମେଣ୍ଟାରୀ ଶକ୍ତି ଚଲାଏ । ଆତ୍ମାର ଉପସ୍ଥିତିରେ ଏ ପାର୍ଲ୍ୟାମେଣ୍ଟ (ଆମ ଭିତରର ସଂସଦ) ଚାଲୁଅଛି । ପାର୍ଲ୍ୟାମେଣ୍ଟ୍‌କୁ ତା'ର କେସ୍ (ମୁକଦ୍ଦମା) ଯାଏ ଯେ, 'ଏହି ବ୍ୟକ୍ତି ହାତରୁ ଏହିପରି ନୈମିତ୍ତିକ କର୍ମ ହୋଇଯାଇଛି ।' ପୁଣି ପାର୍ଲ୍ୟାମେଣ୍ଟ୍‌ରେ ତା'ର କେସ୍ ଚାଲେ । ପାର୍ଲ୍ୟାମେଣ୍ଟ୍ ଯେଉଁ ନିଷ୍ପତ୍ତି କରେ, ତା'କୁ ସେହିପରି ଫଳ ମିଳେ ।

ବାସ୍ତବରେ ଗ୍ରହମାନ ଶକ୍ତି ଚଲାଉଛି, ଏହି କଥା ମଧ୍ୟ ସତ ନୁହେଁ । ମାତ୍ର ଯେଉଁ ଶକ୍ତି ଚଲାଉଛି, ତାହ ତ ଅଲଗା ଶକ୍ତି ଅଟେ । ଗ୍ରହମାନ ତ ସେହି ଶକ୍ତିର ଅଧୀନରେ ଚାଲେ । ପାର୍ଲ୍ୟାମେଣ୍ଟରୁ ଯେପରି ଅର୍ଡ଼ର(ଆଦେଶ) ହୁଏ, ଏଠି କଲେକ୍ଟର ସେହିପରି କାମ କରେ, ସେହିପରି ସେସବୁ ଗ୍ରହ କାମ କରନ୍ତି । ଦେଖ ନା, ମୋର ସବୁ ଗ୍ରହ ଚାଲିଗଲେ, ଏଣୁ ମୋର ଏଠି ଗ୍ରହ ମାନଙ୍କର ସର୍ଭିସ୍ (ସେବା) ହିଁ ନାହିଁ । ପୁଣି ମୋତେ କୌଣସି ଗ୍ରହ ସ୍ପର୍ଶ କରେ ନାହିଁ, କିନ୍ତୁ ସେହି ଶକ୍ତି ମୋତେ ସ୍ପର୍ଶ କରେ । ମୋ ଉପରେ ଗ୍ରହର ଅଧିକାର ନାହିଁ । ମୋ ଉପରେ ସେହି ଅନ୍ୟ ଶକ୍ତିର ଡିରେକ୍ଟ (ସିଧା) ଅଧିକାର ଅଛି, ମଝିରେ ଏହି ଗ୍ରହମାନଙ୍କ ଅଧିକାର ନାହିଁ । ତୁମ ଭିତରେ, ସମସ୍ତଙ୍କ ଭିତରେ ଗ୍ରହ ରୁହନ୍ତି । ମୋର କୌଣସି ଗ୍ରହ ହିଁ ନାହିଁ । ମୋର ଦୁରାଗ୍ରହ ନାହିଁ, ମତାଗ୍ରହ ନାହିଁ, ହଠାଗ୍ରହ ନାହିଁ, କଦାଗ୍ରହ ନାହିଁ । ମୋତେ ନବଗ୍ରହ ମଧ୍ୟରୁ କୌଣସି ଗ୍ରହ ଲଢ଼ନ୍ତି ନାହିଁ । ମୋ ଉପରେ ସବୁ ଗ୍ରହ ରାଜି ରୁହନ୍ତି । ସେମାନେ ସମସ୍ତେ ମୋ ସହ ମିତ୍ର ପରି ରୁହନ୍ତି ।

**ପ୍ରଶ୍ନକର୍ତ୍ତା :** ସବୁ ଗ୍ରହ, ତାରା ଏମାନେ କ'ଣ ?

**ଦାଦାଶ୍ରୀ :** ସେମାନେ ସବୁ ଦେବଲୋକ ଅଟନ୍ତି । ସେମାନଙ୍କୁ ଜ୍ୟୋତିଷ୍କ ଦେବ କୁହାଯାଏ । ଦେବଗତିରେ ସାରା ଜୀବନ କ୍ରେଡ଼ିଟ୍ (ଭଲ ଫଳ) ହିଁ ମିଳେ, ସେଠି ଡେବିଟ୍ (ଖରାପ ଫଳ) ନଥାଏ । ସେଠି ବହୁତ ଇନ୍ଦ୍ରିୟ ସୁଖ ଅଛି, କିନ୍ତୁ ସନାତନ ସୁଖ ନାହିଁ ।

**ପ୍ରଶ୍ନକର୍ତ୍ତା :** ମୋତେ ତ ପ୍ରକୃତ ସୁଖ ଦରକାର ।

**ଦାଦାଶ୍ରୀ :** ପ୍ରକୃତ ସୁଖ ତ, ଯଦି Self realization (ଆତ୍ମସାକ୍ଷାତ୍କାର) ହୋଇଯାଏ ତେବେ ମିଳେ, ସନାତନ ସୁଖ ମିଳେ ।

## ତୁମେ କ'ଣ କରିପାରିବ ?

ତୁମେ ସକାଳେ ନିଦରୁ ଉଠ, ପୁଣି କ'ଣ କ'ଣ କର ?

**ପ୍ରଶ୍ନକର୍ତ୍ତା :** ଉଠିବା ପରେ ଗାଧୋଇବା, ଜଳଖିଆ ପୁଣି ସବୁ କାମଦାମ କରିବାକୁ ହିଁ ପଡ଼େ ନା ?

**ଦାଦାଶ୍ରୀ :** ତେବେ ସେସବୁ କାମ ସାରାଦିନ ତୁମେ ହିଁ କର ?

**ପ୍ରଶ୍ନକର୍ତ୍ତା :** ହଁ, କରିବାକୁ ତ ପଡ଼ିବ ନା ?

**ଦାଦାଶ୍ରୀ :** ନା, ତୁମେ କର ନା କରିବାକୁ ପଡ଼େ ?

**ପ୍ରଶ୍ନକର୍ତ୍ତା :** ମୁଁ ହିଁ କରେ ।

**ଦାଦାଶ୍ରୀ :** କିନ୍ତୁ ତୁମେ ହିଁ କର ନା ଅନ୍ୟ କେହି କରାଏ ତୁମ ପାଖରୁ ?

**ପ୍ରଶ୍ନକର୍ତ୍ତା :** କେହି କରାଏ ନାହିଁ ।

**ଦାଦାଶ୍ରୀ :** ତେବେ ତୁମେ ହିଁ କର ? ତାହେଲେ କେବେ ଯଦି ଦେହ ଖରାପ ହୋଇଯାଏ ତେବେ ଝାଡ଼ା ବନ୍ଦ ହୋଇଯାଏ, ତେବେ ପୁଣି ତୁମେ କରିପାରିବ ?

**ପ୍ରଶ୍ନକର୍ତ୍ତା :** ତାହା ତ ଶରୀରର କଥା ଅଟେ ଆଉ ଶରୀର ଉପରେ ସେତେ କଣ୍ଟ୍ରୋଲ୍ (ନିୟନ୍ତ୍ରଣ) ରହିବା ବହୁତ କଷ୍ଟକର ।

**ଦାଦାଶ୍ରୀ :** ଶରୀର ଉପରେ କଣ୍ଟ୍ରୋଲ୍ ନାହିଁ ? ହଉ ଛାଡ଼, କିନ୍ତୁ କେବେ ଯଦି ନିଦ ଆସୁ ନଥିବ ତେବେ ତୁମେ ପ୍ରୟାସ କଲେ ନିଦ ଆସିଯାଏ ?

**ପ୍ରଶ୍ନକର୍ତ୍ତା :** ଯଦି ଠିକରେ ପ୍ରୟାସ କରିବି ତେବେ ଆସିଯାଏ ।

**ଦାଦାଶ୍ରୀ :** ଏହି ଦୁନିଆରେ କେହି ଏପରି ବ୍ୟକ୍ତି ଜନ୍ମି ନାହିଁ ଯେ ଯାହାର ଝାଡ଼ା ଯିବା ପାଇଁ ସ୍ୱତନ୍ତ୍ର ଶକ୍ତି ଥିବ । ସବୁ ଲୋକ ଭ୍ରାନ୍ତିରେ କୁହନ୍ତି ମୁଁ ଏହା କଲି, ମୁଁ ଏହା କଲି । ସେସବୁ ଭ୍ରାନ୍ତି ଅଟେ, ପ୍ରକୃତ କଥା ନୁହେଁ । ପ୍ରକୃତ କଥା ବୁଝିବା ଉଚିତ । ତାହା କିପରି ବୁଝା ପଡ଼ିବ? ତାହା କୌଣସି ଭ୍ୟୁପଏଣ୍ଟ୍‌ରୁ ବୁଝି ହେବ ନାହିଁ ।

'ଏହା ମୁଁ ଅଟେ, ମୁଁ ଏହା କଲି', ସେସବୁ ଅହଙ୍କାର ଅଟେ ଏବଂ କରିବାବାଲା ଅଲଗା ଅଟେ । ଭଗବାନ ବି କରନ୍ତି ନାହିଁ ଏବଂ ତୁମେ ବି କରୁ ନାହଁ । ତାହା ଯଦି ଜାଣିବାର ଅଛି ତେବେ ବାସ୍ତବିକତା ତୁମକୁ କହିବି, ନହେଲେ ତୁମେ ଯାହା ଜାଣିଛ ତାହା ହିଁ କହିବି ଯେ ଭଗବାନ ବି କରନ୍ତି ଏବଂ ତୁମେ ବି କର ।

**ପ୍ରଶ୍ନକର୍ତ୍ତା :** ନା, ଆମେ ତ କିଛି ବି କରୁନା ।

**ଦାଦାଶ୍ରୀ :** ତେବେ ତୁମ ବ୍ୟାପାର (Business) ତୁମେ ନିଜେ କରୁ ନାହଁ, ତେବେ କିଏ କରୁଛି?

**ପ୍ରଶ୍ନକର୍ତ୍ତା :** ମାତ୍ର ଆମେ ତ କ'ଣ କି, ଭଗବାନଙ୍କ ହାତର ଖେଳଣା ଅଟୁ, ସେ ଯେପରି ଚାହାନ୍ତି ସେହିପରି କରାନ୍ତି ।

**ଦାଦାଶ୍ରୀ :** ନା, ନା, you are not toys of God! (ତୁମେ ଭଗବାନଙ୍କ ଖେଳଣା ନୁହଁ ।)

**ପ୍ରଶ୍ନକର୍ତ୍ତା :** ତାହେଲେ କ'ଣ?

**ଦାଦାଶ୍ରୀ :** you yourself is God! You don't know your ability, your knowledge!!(ତୁମେ ନିଜେ ହିଁ ଭଗବାନ! ତୁମେ ନିଜର ସାମର୍ଥ୍ୟ ଏବଂ ଜ୍ଞାନ ଜାଣି ନାହଁ!!) ସେସବୁ କିଛି ଜାଣି ନାହଁ, ସେଥିପାଇଁ ତୁମେ 'ମୁଁ ଭଗବାନଙ୍କ ଟୟ (ଖେଳଣା) ଅଟେ' କହୁଛ ।

ପ୍ରକୃତ ଫିଲୋସଫି (ତତ୍ତ୍ୱଜ୍ଞାନ) ଯଦି ବୁଝିବ ତେବେ ଏହି ଫିଲୋସଫି ବହୁତ ଗୂଢ଼ ଅଟେ ।

ହିନ୍ଦୁ ଧର୍ମବାଲା ବି କୁହେ ଯେ 'ମୁଁ କଲି', ମୁସଲମାନ୍ ଧର୍ମବାଲା ବି କୁହେ ଯେ

'ମୁଁ କଲି', ଜୈନ ଲୋକେ ବି କୁହନ୍ତି, 'ମୁଁ କଲି' । ସମସ୍ତେ 'ମୁଁ କଲି' କୁହନ୍ତି । ସେ କଥା ବାସ୍ତବିକ ନୁହେଁ ।

ଏଠାରେ କେବେ ଶୁଣାଯାଇ ନଥିବା, କୌଣସି ପୁସ୍ତକରେ ଲେଖାଯାଇ ନଥିବା, ଏପରି ନୂଆ ଜିନିଷ ଅଛି । ପୂର୍ବରୁ କେବେ ହୋଇନାହିଁ, ଏପରି ହୋଇଛି । ଦଶ ଲକ୍ଷ ବର୍ଷରେ କେବେ ହୋଇନାହିଁ ଏପରି ହୋଇଛି । ସମସ୍ତେ ଏପର୍ଯ୍ୟନ୍ତ ଏହା ହିଁ କହିଛନ୍ତି ଯେ, 'ଏହା କର, ଏହା କର, ଏହା କର' ମାତ୍ର ଯେଉଁଠି 'କରିବା'ର ଅଛି ସେଠି ମୋକ୍ଷ ନାହିଁ ଆଉ ଯେଉଁଠି ମୋକ୍ଷ ଅଛି, ସେଠି କରିବାର କିଛି ବି ନାହିଁ ।

ତୁମେ କ'ଣ କର ? ଦିନସାରା ତୁମେ କିଛି ପରିଶ୍ରମ କର ?

**ପ୍ରଶ୍ନକର୍ତ୍ତା :** ପରିଶ୍ରମ ତ କରୁ ନା ?

**ଦାଦାଶ୍ରୀ :** କି ପରିଶ୍ରମ କର ? କେହି ପରିଶ୍ରମ କରେ ହିଁ ନାହିଁ । ତେବେ କ'ଣ କରେ ? ଖାଲି ଅହଙ୍କାର କରନ୍ତି ଯେ 'ଏହା ମୁଁ କଲି ।' ପରିଶ୍ରମ ତ ବଳଦ କରେ । କେହି ମଣିଷ ପରିଶ୍ରମ କରେ ? ତୁମେ ଦେଖିଛ ?

**ପ୍ରଶ୍ନକର୍ତ୍ତା :** ତେବେ ଏ ଅଫିସ ଯାଉ, କାମ କରୁ ତାହା କ'ଣ ?

**ଦାଦାଶ୍ରୀ :** ଏହା ତ ରଙ୍ଗ୍ ବିଲିଫ୍ ଅଟେ ଯେ 'ମୁଁ କରୁଛି ।' ଏହା ତ ଅଟୋମେଟିକ୍ (ଆପେ ଆପେ) ହୋଇଯାଏ । ଝାଡ଼ା ତୁମେ ଫେର ନା ଏମିତି ହିଁ ହୋଇଯାଏ ?! ଲୋକେ କୁହନ୍ତି ଯେ 'ମୁଁ ଝାଡ଼ା ଯାଇଥିଲି ।' ତୁମେ ଶୁଅ ନା ଏମିତି ହିଁ ନିଦ ଆସିଯାଏ ?

**ପ୍ରଶ୍ନକର୍ତ୍ତା :** ଏମିତି ହିଁ ଆସିଯାଏ ।

**ଦାଦାଶ୍ରୀ :** ତେବେ ଉଠିବାର ଥିବ ତେବେ ତୁମେ ଉଠ ନା କିଏ ଉଠାଏ ?

**ପ୍ରଶ୍ନକର୍ତ୍ତା :** ସେମିତି ହିଁ ଉଠିଯାଉ ।

**ଦାଦାଶ୍ରୀ :** ହଁ, ଏହା ତୁମ ହାତରେ ନାହିଁ । ତେବେ ତୁମ ହାତରେ କ'ଣ ଅଛି ? ତୁମେ ତ ଖାଲି ଅହଙ୍କାର କରୁଛ ଯେ, 'ମୁଁ ଏହା କଲି, ମୁଁ ଶୋଇଗଲି ।' ପୁଣି କେବେ କୁହନ୍ତି ଯେ 'ଆଜି ତ ମୋତେ ନିଦ ହିଁ ଆସିଲା ନାହିଁ ।' ଏସବୁ ବିରୋଧାଭାସ ଅଟେ । କୁହନ୍ତି, 'ମୁଁ ସକାଳେ ଶୀଘ୍ର ଉଠେ', ତେବେ ପୁଣି ଘଡ଼ି କାହିଁକି ରଖୁଛ ? ଏବଂ କୁହନ୍ତି, 'ମୁଁ ଖାଇଲି ।' ଓହୋହୋ ! ବଡ଼ ଆସିଲା ଖାଇବାବାଲା !!! ତାହା ତ

ଦାନ୍ତ ଚୋବାଏ, ଜିଭ ସ୍ୱାଦ ନିଏ ଏବଂ ଏ ହାତ କାମ କରେ, ସେସବୁ ମେକାନିକାଲୀ (ଯନ୍ତ୍ରବତ) ହୋଇଯାଏ । ତୁମେ ତ ଖାଲି ଅହଙ୍କାର କରୁଛ ।

**ପ୍ରଶ୍ନକର୍ତ୍ତା :** ମୁଁ କ'ଣ କରୁଛି ତାହେଲେ ?

**ଦାଦାଶ୍ରୀ :** ତୁମେ କିଛି କରୁ ନାହଁ । ତୁମେ କେବଳ କାମ ବିଗାଡୁଛ (ଅହଙ୍କାର କରି) ।

## ଅନନ୍ତ ଶକ୍ତିବାଲା, ବନ୍ଧନରେ

ଏସବୁ ମେକାନିକାଲ୍(ଯନ୍ତ୍ରବତ) ହୁଏ । ବିବାହ ବି କରେ ତାହା ମେକାନିକାଲ୍ ହୋଇଯାଏ । ପୁଅ ବି ହୁଏ, ତାହା ମେକାନିକାଲ୍ ହୁଏ । ତୁମେ ନିଜେ କିଏ, ଯଦି ଏହା ରିୟଲାଇଜ୍(ସାକ୍ଷାତ୍କାର) ହୋଇଯାଏ, ତେବେ ପରେ ତୁମେ ମେକାନିକାଲ୍ ରହିବ ନାହିଁ । ତୁମେ ନିଜେ କରୁଛ ନା ଭଗବାନ କରାଉଛନ୍ତି, ତାହାର ସନ୍ଧାନ ତ କରିବା ଉଚିତ ନା ? ଯଦି ତୁମେ ନିଜେ କରୁଛ, ତେବେ ତୁମ ଇଚ୍ଛା ଅନୁସାରେ ପ୍ରତ୍ୟେକ ଜିନିଷ ହୋଇ ପାରିବ ? ଏପରି ୧୦୦% (ଶତ ପ୍ରତିଶତ) ହୋଇ ପାରିବ ?

**ପ୍ରଶ୍ନକର୍ତ୍ତା :** ୧୦୦% ତ ହୁଏ ନାହିଁ ।

**ଦାଦାଶ୍ରୀ :** ହଁ, ତେବେ ତୁମେ ନିଜେ କର୍ତ୍ତା ନୁହଁ । ମାତ୍ର ତୁମକୁ ଏପରି ଲାଗୁଛି ଯେ ମୁଁ ହିଁ କର୍ତ୍ତା ।

**ପ୍ରଶ୍ନକର୍ତ୍ତା :** ଭଗବାନ କରାଉଛନ୍ତି ।

**ଦାଦାଶ୍ରୀ :** ନା, ଭଗବାନ ବି କରାନ୍ତି ନାହିଁ । ଯଦି ଭଗବାନ କରାଉଥାନ୍ତେ ତେବେ ଚୋରମାନେ କହନ୍ତେ, 'ଭଗବାନ ଆମକୁ ପ୍ରେରଣା ଦେଉଛନ୍ତି ।' ଆରେ ବାବା, ଭଗବାନ ଏପରି ପ୍ରେରଣା ଦିଅନ୍ତି ହିଁ ନାହିଁ । ସେ ଏଥିରେ ହାତ ମାରନ୍ତି ନାହିଁ ।

## ବ୍ୟବହାର-ଜଗତରେ, ନିଜର ସତ୍ତା କେତେ ?

ତୁମର ଇଚ୍ଛା ନଥିବ ତଥାପି ତୁମେ କର୍ମ ବାନ୍ଧୁଛ । କାରଣ ତୁମେ ଏପରି ମାନୁଛ ଯେ 'ମୁଁ କର୍ତ୍ତା ଅଟେ ଏବଂ ଏହା ମୁଁ କଲି, ଏହା ମୁଁ କଲି ।'

**ପ୍ରଶ୍ନକର୍ତ୍ତା :** ଯେଉଁ ବ୍ୟକ୍ତି ସବୁଠୁ ପ୍ରଥମେ ଜନ୍ମ ହେଲା, ତା'କୁ ତ କିଛି କର୍ମ ନାହିଁ ନା ?

**ଦାଦାଶ୍ରୀ :** କେହି ପ୍ରଥମେ ଜନ୍ମ ହୋଇ ହିଁ ନାହିଁ । ଏହି ଜଗତରେ ପ୍ରଥମ-ପର ଏପରି କିଛି ନାହିଁ । ସର୍କଲ୍ (ଗୋଲ) ଥାଏ, ସେଥିରେ କିଏ ପ୍ରଥମ ? ଏଥିରେ କେହି ପ୍ରଥମ ନାହିଁ, ଆଦି ନାହିଁ, ଅନ୍ତ ନାହିଁ । ସବୁ ଅନାଦି-ଅନନ୍ତ ଅଟେ । କେହି ପ୍ରଥମେ ଜନ୍ମ ହୋଇଛି, ତାହା ବୁଦ୍ଧିର କଥା ଅଟେ । ବୁଦ୍ଧିଦ୍ୱାରା ସଲ୍‌ଭ ହିଁ ହୁଏ ନାହିଁ, ଜ୍ଞାନଦ୍ୱାରା ସଲ୍ୟୁସନ୍ ଆସେ । ଛଅ ଅବିନାଶୀ ତତ୍ତ୍ୱ ଅଛି । ଏହି ଛଅ ତତ୍ତ୍ୱର ନିରନ୍ତର ସମସରଣ ହୁଏ, ଅର୍ଥାତ ପରିବର୍ତ୍ତନ ହୁଏ । ଏହାଦ୍ୱାରା ସବୁ ଅବସ୍ଥା ସୃଷ୍ଟି ହୋଇଯାଏ ଏବଂ ଅବସ୍ଥା ସବୁ ବିନାଶୀ ଅଟେ ।

ସାଇଣ୍ଟିଫିକ୍ ସରକମ୍‌ସ୍ଟେନ୍ସିୟଲ୍ ଏଭିଡେନ୍ସ ମାନେ କ'ଣ? ସମୟ, ସ୍ପେସ୍ (ଜାଗା), କର୍ମର ଫଳ, ଏସବୁ ଏକାଠି ହୋଇଯାଏ ସେତେବେଳେ ଫାଶି ଦଣ୍ଡାଦେଶ ହୋଇଯାଏ । ଦଣ୍ଡ ଦେବା ଜଜ୍ (ନ୍ୟାୟାଧୀଶ) ହାତରେ ନାହିଁ । କେହି ବ୍ୟକ୍ତି ଏପରି ଜନ୍ମ ହୋଇ ନାହିଁ ଯେ ଯାହା ହାତରେ ସ୍ୱତନ୍ତ୍ର ଶକ୍ତି ଥିବ, କାରଣ ସବୁ ପରଶକ୍ତି ଅଟେ । ପ୍ରକୃତି ନିଜ ଫେବର୍(ପକ୍ଷ)ରେ ଅଛି ତେଣୁ ତୁମେ ମାନି ନେଉଛ, 'ମୁଁ କଲି, ମୁଁ କର୍ତ୍ତା ଅଟେ ।'

ଯେଉଁଠି କରିବାକୁ ପଡ଼େ, ସେଠି ଭ୍ରାନ୍ତି ବଢ଼େ । ପୁଣି ଯାହା କିଛି ବି କରେ ତାହାଦ୍ୱାରା ଭ୍ରାନ୍ତି ଆହୁରି ବଢ଼ିଯାଏ । ଯଦି 'ଜ୍ଞାନୀପୁରୁଷ' ମିଳିଗଲେ ତେବେ କରିବାର କିଛି ନାହିଁ । କରିବା ଦ୍ୱାରା ଭ୍ରାନ୍ତି ବଢ଼ିଯାଏ । ଜପ କରିବ ତେବେ ଭ୍ରାନ୍ତି ବଢ଼ିଯାଏ । ତପ କରିବ ତେବେ ଭ୍ରାନ୍ତି ବଢ଼ିଯାଏ, ଉପବାସ କରିବ ତେବେ ଭ୍ରାନ୍ତି ବଢ଼ିଯାଏ । ପୁସ୍ତକ ପଢ଼ି ଚାଲିବ ତେବେ ଭ୍ରାନ୍ତି ବଢ଼ିଯାଏ । ମୁଁ ଏହା କଲି, ମୁଁ ତାହା କଲି, ସେ ସବୁ ଭ୍ରାନ୍ତି ଅଟେ । 'ଜ୍ଞାନୀପୁରୁଷ'ଙ୍କ କୃପା ମିଳିଗଲା ତେବେ 'କରିବା'ର କିଛି ନାହିଁ, ପରେ ସବୁ ସହଜରୂପେ ହୁଏ ।

କୌଣସି ବ୍ୟକ୍ତି ଖାଇ ପାରିବ ହିଁ ନାହିଁ । କେବଳ ଅହଙ୍କାର କରେ ଯେ ମୁଁ ଖାଇଲି । ପୁଣି ରୋଗୀଣା କାହିଁକି ହୋଇଯାଉ? ରୋଗୀଣା ହୋଇଗଲେ କାହିଁକି ଖାଇପାରେ ନାହିଁ? ତେବେ ପ୍ରଥମେ ମଧ୍ୟ ଖାଇବାର ପ୍ରୟାସ ତୁମର ଥିଲା? ପ୍ରଥମେ ଖାଉଥିଲ ଆଉ ଏବେ କାହିଁକି ଖାଉ ନାହଁ? ଏପରି କେବେ ବିଚାର ବି କରିନାହଁ? ଏସବୁ ନେଚର୍ (ପ୍ରକୃତି) ହିଁ ଚଲାଏ, ଭଗବାନ ଚଲାନ୍ତି ନାହିଁ । ରାତିରେ ଯେବେ ଶୋଇଯାନ୍ତି ସେତେବେଳେ ମଧ୍ୟ ଦୁନିଆ ଚାଲୁଥାଏ । ଦୁନିଆ ଏକ ମିନିଟ ମଧ୍ୟ

ଅଟକେ ନାହିଁ । କୌଣସି ବ୍ୟକ୍ତି ମଦ ପିଇ ପଡ଼ିଯାଏ, ତେବେ ମଧ୍ୟ ଦୁନିଆ ଚାଲୁଥାଏ । ତୁମେ କେବେ ବ୍ରାଣ୍ଡି ପିଇଥିଲ ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ସେହି ସମୟରେ ବି ସଂସାର ଚାଲୁଥାଏ, ଅଟକି ଯାଏ ନାହିଁ । ତୁମେ ମଦ ପିଇ ମନର କୌଣସି ବି ମସ୍ତିରେ ଥାଅ, ମାତ୍ର ଦୁନିଆ ଚାଲୁଥାଏ, ଅଟକି ଯାଏ ନାହିଁ ।

ସଂସାରର ବ୍ୟବହାର ତୁମ ଜନ୍ମ ପୂର୍ବରୁ ବି ଚାଲୁଥିଲା ଏବଂ ତୁମ ମରିବା ପରେ ମଧ୍ୟ ଚାଲିବ । ସଂସାର ବ୍ୟବହାର ତ ସାପେକ୍ଷ ଅଟେ । ଲୋକେ କ'ଣ କୁହନ୍ତି ଯେ, 'ମୁଁ ନଥିଲେ କ'ଣ ହୋଇଥାନ୍ତା ? ଦୁନିଆ ଏମିତି ହୋଇଯାଇଥାନ୍ତା ।'

ସେ ବଦରେଶନ୍ (ଝଂଝଟ୍) ଛାଡ଼ି ଦିଅ । ସେସବୁ ଅହଙ୍କାରର ବଦରେଶନ୍ ଅଟେ । ମୁଁ ଏପରି କରୁଛି, ମୁଁ ପିଲାଙ୍କୁ ବଡ଼ କଲି, ମୁଁ ପିଲାଙ୍କୁ ପଢ଼ାଉଛି, ମୁଁ ଏହା କଲି, ମୁଁ ତାହା କଲି, ସେ ସବୁ ଅହଙ୍କାର ଅଟେ । ଜଣେ ବ୍ୟକ୍ତି ଗାଈ ମାରିବାର ବିଚାର କଲା ଆଉ ଜଣେ ବ୍ୟକ୍ତି ଗାଈକୁ ବଞ୍ଚାଇବାର ବିଚାର କଲା ତେବେ ଭଗବାନଙ୍କ ଠାରେ କେଉଁ ବ୍ୟକ୍ତିର ମୂଲ୍ୟ ଅଛି ? ଭଗବାନ କ'ଣ କୁହନ୍ତି ଯେ 'ଏଠି କାହାର ମୂଲ୍ୟ ନାହିଁ । ତୁମେ ମାରିବାର ଅହଙ୍କାର କରୁଛ, ସେ ବଞ୍ଚାଇବାର ଅହଙ୍କାର କରୁଛି । ମୋ ପାଖରେ ଅହଙ୍କାରବାଲା ଚଳିବ ନାହିଁ ।' ଅହଙ୍କାର କରିବା ଉଚିତ ନୁହେଁ ଯେ 'ମୁଁ ଏହା ତ୍ୟାଗ କଲି ।' ଅନନ୍ତ ଜନ୍ମ ହେଲା ତାହା(ଅହଙ୍କାର) ହିଁ କରୁଛି ନା ? ଏଥିରେ ଫାଇଦା କ'ଣ ? ରିଲେଟିଭ୍ ଫାଇଦା ଅଛି । ମନୁଷ୍ୟରୁ ଦେବଗତିରେ ଯାଏ । କିନ୍ତୁ ରିୟଲ୍ ଫାଇଦା ମିଳିବ ନାହିଁ । ରିୟଲ୍ ଫାଇଦା ତ ଯଦି ମୁକ୍ତପୁରୁଷ ମିଳିଯାନ୍ତି, ମୋକ୍ଷଦାତା ପୁରୁଷ ମିଳିଯାନ୍ତି ଏବଂ ମୋକ୍ଷର ଦାନ ମିଳେ ତେବେ କାମ ହେବ ।

ଏକ ବ୍ରାହ୍ମଣର ଦୁଇ ପୁଅ ଥିଲେ । ଜଣେ ତିନି ବର୍ଷର ଏବଂ ଆଉ ଜଣେ ଦେଢ଼ ବର୍ଷର । ସେ ବ୍ରାହ୍ମଣ ମରିଗଲା ଏବଂ ତା' ସ୍ତ୍ରୀ ମଧ୍ୟ ମରିଗଲା । ସେ ପୁଅମାନଙ୍କୁ ନେବା ପାଇଁ ଗାଁ'ରେ ଅନ୍ୟ କେହି ବ୍ରାହ୍ମଣ ପ୍ରସ୍ତୁତ ହେଲେ ନାହିଁ । ଗାଁ'ରେ ଜଣେ କ୍ଷତ୍ରିୟ ଥିଲା, ତା'ର ପୁଅ ନଥିଲା । ସେ କହିବାକୁ ଲାଗିଲା ଯେ 'ମୋତେ ଗୋଟିଏ ପୁଅ ଦେଇଦିଅ ।' ତେବେ ଗାଁ'ବାଲା ବଡ଼ ପୁଅକୁ ଦେଇଦେଲେ । ଅନ୍ୟ ଦେଢ଼ବର୍ଷର ପୁଅକୁ କେହି ନେବାକୁ ପ୍ରସ୍ତୁତ ହେଲେ ନାହିଁ । ପରେ ଏକ ହରିଜନ କହିଲା ଯେ 'ମୋର ପୁଅ ନାହିଁ, ଯଦି ମୋତେ ଦେଇଦେବ ତେବେ ବହୁତ ଉପକାର ହେବ ।'

ଗାଁ'ବାଲା ବିଚାର କଲେ ଯେ ଏ ବିଚରା ମରିଯିବ, ଏହା ଅପେକ୍ଷା ଯଦି ହରିଜନ ପାଖକୁ ଯିବ ତେବେ ଠିକ । ବଞ୍ଚି ତ ଯିବ । ତେବେ ଦ୍ୱିତୀୟ ପୁଅକୁ ହରିଜନ ନେଇଗଲା ।

ଉଭୟ ପୁଅ ବଡ଼ ହେବାକୁ ଲାଗିଲେ । କ୍ଷତ୍ରିୟ ପାଖରେ ଥିବା ପୁଅ କୋଡ଼ିଏ ବର୍ଷର ହେଲା ତେବେ ହରିଜନ ପାଖରେ ଥିବା ପୁଅ ଅଠର ବର୍ଷର ହୋଇଗଲା । ହରିଜନବାଲା ପୁଅ କ'ଣ କରୁଥିଲା ? ମଦ ତିଆରି କରୁଥିଲା, ମଦ ପିଉଥିଲା ମଧ୍ୟ ଏବଂ ବିକ୍ରି ମଧ୍ୟ କରୁଥିଲା । କ୍ଷତ୍ରିୟ ପାଖରେ ଯେଉଁ ପୁଅ ଥିଲା ତା'କୁ ବୁଝା ପଡ଼ିଗଲା ଯେ ମଦ ପିଇବା ଖରାପ ଅଟେ, ଏହା ଭଲ ଜିନିଷ ନୁହେଁ । ଉଭୟ ଭାଇ ବ୍ରାହ୍ମଣ ଥିଲେ । ମାତ୍ର ଜଣକୁ ହରିଜନର ସଂଯୋଗ ମିଳିଗଲା ଏବଂ ଅନ୍ୟକୁ କ୍ଷତ୍ରିୟର ଭଲ ସଂଯୋଗ ମିଳିଗଲା । କେହି ଜଣେ ଭଗବାନଙ୍କୁ ପଚାରିଲା ଏହି ଦୁହିଁଙ୍କ ମଧ୍ୟରୁ ଭଲ କିଏ ? ତେବେ ଭଗବାନ କହିଦେଲେ ଯେ 'ଜଣେ ମଦ ନ ପିଇବାର ଅହଙ୍କାର କରୁଛି ଏବଂ ଆର ଜଣକ ମଦ ପିଇବାର ଅହଙ୍କାର କରୁଛି । ମୋକ୍ଷ ପାଇଁ ଦୁହେଁ କାମକୁ ନୁହେଁ । ନିଜ ଉତ୍ତରଦାୟିତ୍ୱରେ କରୁଛନ୍ତି । ଯିଏ ପିଇବାର ଅହଙ୍କାର କରୁଛି ତାହା ତା' ନିଜର ଉତ୍ତରଦାୟିତ୍ୱ । ନ ପିଇବାର ଅହଙ୍କାର କରୁଛି ତାହା ମଧ୍ୟ ତା' ନିଜର ଉତ୍ତରଦାୟିତ୍ୱ ।'

ପ୍ରକୃତ କଥାର ସମାଧାନ ନିଶ୍ଚିତ ହେବା ଉଚିତ । ପୁଣି ଶଙ୍କା ରହିବ ନାହିଁ ।

ମୁଁ କ'ଣ କହୁଛି ଯେ ଏ ସବୁ କେବଳ ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ୍ ଏଭିଡେନ୍ସ ଅଟେ । ଭଗବାନଙ୍କୁ କିଛି କରିବାକୁ ପଡ଼େ ନାହିଁ । ଏମିତି ହିଁ ସଂଯୋଗ ମିଳିଯାଏ ଏବଂ କାମ ହୋଇଯାଏ । ସାଇଣ୍ଟିଫିକ୍ (ବୈଜ୍ଞାନିକ) ପ୍ରକ୍ରିୟାରେ ହିଁ ହୁଏ କିନ୍ତୁ ମନୁଷ୍ୟ କହେ ଯେ 'ମୁଁ ଏହା କଲି, ମୁଁ ତାହା କଲି', ତାହା ଖାଲି ଅହଙ୍କାର ଅଟେ ।

**ପ୍ରଶ୍ନକର୍ତ୍ତା :** ତାହା ଠିକ ଯେ ଅହଙ୍କାର ନହେବା ଉଚିତ, ମାତ୍ର କିଛି ପ୍ରବୃତ୍ତି ତ କରିବାକୁ ହିଁ ପଡ଼ିବ ନା ? ନ କଲେ କିଛି ହେବ ହିଁ ନାହିଁ ।

**ଦାଦାଶ୍ରୀ :** ପ୍ରବୃତ୍ତି ତ ଅନ୍ୟ ଶକ୍ତି ତୁମ ପାଖରୁ କରାଏ । ତୁମକୁ ଏଥିରେ ଅହଙ୍କାର କରିବାର କୌଣସି ଆବଶ୍ୟକତା ନାହିଁ । ସେ ଶକ୍ତି ହିଁ ସବୁ କରାଏ । ତୁମକୁ ଦେଖିବାର ଆବଶ୍ୟକତା ଅଛି ଯେ କ'ଣ ହେଉଛି । ଏ ରବିନ୍ଦ୍ର କ'ଣ କରୁଛି ତାହା ତୁମକୁ ଦେଖିବାର ଆବଶ୍ୟକତା ଅଛି । କାମ ସବୁ କରିବ, ଏବଂ କହିବ ମଧ୍ୟ ଯେ 'ଏହା ମୁଁ କଲି' କିନ୍ତୁ ଡ୍ରାମାଟିକ୍ (ନାଟକୀୟ) କହିବ । ମାତ୍ର ବିଲିଫ୍(ମାନ୍ୟତା)ରେ

ନହେବା ଉଚିତ ଯେ 'ଏହା ମୁଁ କଲି ।' ଏହା ବିଲିଫ୍‌ରେ ରୁହେ ଯେ 'ଏହା ମୁଁ କଲି' ତାହା ହିଁ ଭୁଲ । ଯେପରି ଡ୍ରାମାରେ ଭର୍ତ୍ତୃହରିର ଅଭିନୟ କରେ, କିନ୍ତୁ ସେ ଭିତରେ ଜାଣିଥାଏ ଯେ ମୁଁ ଲକ୍ଷ୍ମୀଚନ୍ଦ ଅଟେ । ସେ ଏହା ଭୁଲେ ନାହିଁ । ସେ ଜାଣିଥାଏ ଯେ, 'ମୁଁ ଲକ୍ଷ୍ମୀଚନ୍ଦ ଅଟେ', ସେଥିପାଇଁ ଭର୍ତ୍ତୃହରି ନାଟକରେ ତା'କୁ ରାଗ୍-ଦ୍ୱେଷ ହୁଏ ନାହିଁ । ଏହିପରି ନିଜକୁ ଯଦି ଚିହ୍ନିନେଲା, ପୁଣି ରାଗ୍-ଦ୍ୱେଷ ହୁଏ ନାହିଁ । ଏସବୁ ନାଟକ ହିଁ ଅଟେ । ନିଜେ ପରମାନେଣ୍ଟ୍ (ଅବିନାଶୀ) ଅଟେ ଏବଂ ଡ୍ରାମା (ଅଭିନୟ) କରେ । ଏଠି ଜଣକର ପୁଅ ହୋଇ ଆସିଲା, ସେହି ଡ୍ରାମା ସରିଯିବ, ପୁଣି ଅନ୍ୟ କାହା ପାଖରେ ଡ୍ରାମା କରିବ, ପୁଣି ଆଉ କାହା ପାଖରେ ଡ୍ରାମା କରିବ । The world is the drama itself. ବୁଝିଗଲ ନା ? ଏବେ ତୁମେ ରବିନ୍ଦ୍ରର ଡ୍ରାମା କରୁଛ । ଏହି ଡ୍ରାମାରେ ମାରିବ, ମାଡ଼ ଖାଇବ, କାନ୍ଦିବ, ସବୁ କିଛି କରିବ, କିନ୍ତୁ ରାଗ୍-ଦ୍ୱେଷ କରିବ ନାହିଁ । ଏମିତି-ସେମିତି ସବୁ କଥାବାର୍ତ୍ତା କରିବ କିନ୍ତୁ ସୁପରଫ୍ଲୁୟସ୍ (ଦେଖାଣିଆ), ପଛରେ କିଛି ନାହିଁ, ଏହିପରି ରହିବ । ଏହା ଡ୍ରାମା ଅଟେ, ଏହାର ରିହର୍ସଲ୍(ପୂର୍ବାଭ୍ୟାସ) ବି ହୋଇଯାଇଛି । ତୁମେ ଏଥିରେ ନୂଆ କିଛି କରୁ ହିଁ ନାହଁ ।

## ଜଗତ କର୍ତ୍ତା - ବାସ୍ତବରେ କିଏ ?

ଏହା ଶାସ୍ତ୍ର ବାହାରର କଥା ଅଟେ । ମୋତେ ଦୁଇ ପ୍ରକାରର କଥା କହିବାକୁ ପଡ଼େ । ତୁମ ଭଳି ବହୁତ ବିଚାରଶୀଳ ବ୍ୟକ୍ତି ହୋଇଥିବ, ସେ ଯଦି ପଚାରେ ଯେ 'ଏ ଦୁନିଆ କିଏ ତିଆରି କଲା ?' ତେବେ ମୁଁ କହିବି ଯେ 'God is not the creator of this world at all!' (ଭଗବାନ ଏହି ଦୁନିଆର ରଚୟିତା ବିଲକୁଲ ବି ନୁହଁନ୍ତି) । ମାତ୍ର ସାଧାରଣ ଲୋକ ଯଦି ପଚାରିବେ, ଆଉ ବଡ଼ ସଭାରେ ଏମିତି ପଚାରିବେ ତେବେ ମୁଁ ଏପରି କହିବି ଯେ God is the creator (ଭଗବାନ ରଚୟିତା ଅଟନ୍ତି) । କାରଣ ସେହି ଫ୍ୟାକ୍ଟ (ତଥ୍ୟ) ତାଙ୍କୁ ବୁଝା ପଡ଼ିବ ନାହିଁ । ଯେଉଁ କଥା ତାଙ୍କୁ ବୁଝା ପଡ଼େ ସେହି କଥା କୁହ । ତାଙ୍କୁ ବୁଝା ନ ପଡ଼େ ଏପରି କଥା ଯଦି କହିବା ତେବେ ତାଙ୍କର ଅବଲମ୍ବନ ଭାଙ୍ଗିଯିବ ଏବଂ ଅବଲମ୍ବନ ବିନା ମନୁଷ୍ୟ ଜୀବନ୍ତ ରହି ପାରିବ ନାହିଁ ।

God is the creator of this world (ଭଗବାନ ଏହି ଦୁନିଆର ରଚୟିତା ଅଟନ୍ତି) ଏହି କଥା ଭ୍ରାନ୍ତ ଭାଷାରେ ଠିକ ଅଟେ, ସେହି ଭ୍ୟୁପଏଣ୍ଟ୍(ଦୃଷ୍ଟିକୋଣ) ରୁ ଠିକ ଅଟେ ।

ଭ୍ୟୁପଏଣ୍ଟ୍‌ବାଲା ଯଦି ହୋଇଥିବ ତେବେ ତାଙ୍କ ପ୍ରାରବ୍ଧ ମୁଁ ଦେଖିନିଏ ଯେ ଏ ଭାଇଙ୍କ ପ୍ରାରବ୍ଧରେ ମୋର ଏହି ଫ୍ୟାକ୍ଟ (ଯଥାର୍ଥ) କଥା ନାହିଁ, ତେଣୁ ମୁଁ ତାଙ୍କ ଭ୍ୟୁଏପଣ୍ଟ୍ ଅନୁସାରେ ହିଁ ସବୁ ହେଲ୍ପ (ସାହାଯ୍ୟ) କରେ । ତେବେ ଏହାଦ୍ୱାରା ସେମାନେ ଆଗକୁ ବଢ଼ନ୍ତି ।

ଭଗବାନ ଏହି ଦୁନିଆ ତିଆରି କରିଛନ୍ତି ଏହି କଥା ରିୟଲ୍ ନୁହେଁ । ସେ ସବୁ ରିଲେଟିଭ୍ ଅଟେ । ରିଲେଟିଭ୍ ଦିଗରେ ତ ଅନନ୍ତ ଥର ଗଲେ, କିନ୍ତୁ ଆମ କାମ ସନ୍ତୋଷଜନକ କେବେ ହେଲା ନାହିଁ । ସେଥିପାଇଁ ରିୟଲ ପାଖକୁ ହିଁ ଯିବାକୁ ପଡ଼ିବ ।

ତୁମେ ଯାହା ଜାଣିଛ ତାହାଠୁ ଆଗକୁ ବି ଜାଣିବାକୁ ତ ପଡ଼ିବ ନା? ଏବେ ଦୁନିଆରେ ଯେଉଁ ଜ୍ଞାନ ଚାଲିଛି, ତାହାକୁ ତୁମେ ମାନିନେଲ ଯେ ଏହା ହିଁ ପ୍ରକୃତ ଜ୍ଞାନ, ମାତ୍ର ତାହା ତ ଲୌକିକ ଜ୍ଞାନ ଅଟେ । ଏହାଠୁ ବହୁତ ଆଗକୁ ଯିବାକୁ ପଡ଼ିବ ।

**ପ୍ରଶ୍ନକର୍ତ୍ତା :** ଏତେ ବଡ଼ ଦୁନିଆ, ଏତେ ବଡ଼ କାରବାର, ଭଗବାନଙ୍କ ବିନା ଆଉ କିଏ ତିଆରି କରି ପାରିବ?

**ଦାଦାଶ୍ରୀ :** ତାଙ୍କ ପାଖରେ ଅଲଗା କିଛି କାମ ନଥିଲା, ସେଥିପାଇଁ ତିଆରି କଲେ ଲାଗୁଛି!!!

**ପ୍ରଶ୍ନକର୍ତ୍ତା :** ଯିଏ ବି ତିଆରି କରିଛନ୍ତି, ସେ ବୁଝି ବିଚାରି ତିଆରି କରିଛନ୍ତି ।

**ଦାଦାଶ୍ରୀ :** କାହିଁକି? ତାଙ୍କ ପୁଅର ବିବାହ ପାଇଁ ଝିଅ ମିଳୁ ନଥିଲା, ସେଥିପାଇଁ ସେ ଏହି ବ୍ରହ୍ମାଣ୍ଡ ତିଆରି କରିଦେଲେ?

**ପ୍ରଶ୍ନକର୍ତ୍ତା :** ତେବେ ପୁଣି ଏହାର କ୍ରିଏଟର୍ କିଏ?

**ଦାଦାଶ୍ରୀ :** କ୍ରିଏଟର୍ (ରଚୟିତା)ର ଅର୍ଥ କୁମ୍ଭାର ହୋଇଥାଏ । କୁମ୍ଭାର ଅର୍ଥାତ୍ ପ୍ରଜାପତି, ଯିଏ ମାଟିର ପାତ୍ର ତିଆରି କରେ । ଭଗବାନ କୁମ୍ଭାର ନୁହଁନ୍ତି । ଭଗବାନ ତ ଭଗବାନ ହିଁ ଅଟନ୍ତି । ଫରେନ୍‌ବାଲା ସମସ୍ତେ ମାନନ୍ତି ଯେ God is the creator of this world (ଭଗବାନ ହିଁ ଏହି ଦୁନିଆ ତିଆରି କରିଛନ୍ତି), ମୁସଲମାନ୍ ଲୋକେ କୁହନ୍ତି ଯେ ଆଲ୍ଲାହ ଏହି ଦୁନିଆ ତିଆରି କରିଛନ୍ତି, ହିନ୍ଦୁମାନେ କୁହନ୍ତି ଯେ ଭଗବାନ ସବୁ ତିଆରି କରିଛନ୍ତି । ଫରେନ୍‌ର ସାଇଣ୍ଟିଷ୍ଟ (ବୈଜ୍ଞାନିକ) ମୋତେ ଭେଟନ୍ତି, ସେମାନଙ୍କୁ ମୁଁ କୁହେ ଯେ God is the creator of this world is correct by Christian's viewpoint, by Hindu's

viewpoint, by Muslim's viewpoint, but not by fact. By fact, only scientific circumstantial evidence । ଯଦି ତୁମକୁ ଫ୍ୟାକ୍ଟ ଜାଣିବାର ବିଚାର ଥିବ, ତେବେ ମୋ ପାଖକୁ ଆସିବ, ଅନ୍ୟଥା ତୁମକୁ ସନ୍ତୋଷ ତ ଅଛି ନା ? କ'ଣ ଲାଗୁଛି ତୁମକୁ ?

**ପ୍ରଶ୍ନକର୍ତ୍ତା :** ସବୁ ଧର୍ମର ଧ୍ୟେୟ ତ ଏକ ହିଁ ଅଟେ, ତଥାପି ଓପିନିୟନ୍ସ (ବିଚାରଧାରା) ଅଲଗା ଅଲଗା କାହିଁକି ? ଆଉ ସମସ୍ତେ 'ଆମର ହିଁ ଠିକ' ଏପରି କାହିଁକି କୁହନ୍ତି ?

**ଦାଦାଶ୍ରୀ :** ଏହି ସର୍କଲ୍‌ରେ ଏହି ସେଣ୍ଟର୍ (କେନ୍ଦ୍ରବିନ୍ଦୁ) ଅଛି ଏବଂ ୩୬୦ଟି ଡିଗ୍ରୀ ଅଛି । କେଉଁ ଧର୍ମ ୬୦ ଡିଗ୍ରୀରେ ଅଛି, କେହି ୧୨୦ ଡିଗ୍ରୀରେ, କେହି ୧୮୦ ଡିଗ୍ରୀରେ । ଏହିପରି ପ୍ରତ୍ୟେକଙ୍କର ଭ୍ୟୁପଏଣ୍ଟ୍ ଅଲଗା ଅଲଗା ଅଟେ । ଏବଂ ୧୪୦ ଡିଗ୍ରୀ ଭ୍ୟୁପଏଣ୍ଟ୍‌ବାଲା ଯାହା ଦେଖେ, ୨୦୦ ଡିଗ୍ରୀବାଲା ତା'ଠାରୁ ଭିନ୍ନ ଦେଖେ । ୧୪୦ ଡିଗ୍ରୀବାଲା, ୨୦୦ ଡିଗ୍ରୀବାଲାକୁ କୁହେ ଯେ ତୁମେ ଭୁଲ, ମାନେ ୨୦୦ ଡିଗ୍ରୀବାଲାକୁ ଭୁଲ କୁହେ । ମୁଁ କ'ଣ କହୁଛି ଯେ ୨୦୦ ଡିଗ୍ରୀବାଲା ୧୪୦ ଡିଗ୍ରୀକୁ ଆସିଯାଉ ଏବଂ ୧୪୦ ଡିଗ୍ରୀବାଲା ୨୦୦ ଡିଗ୍ରୀକୁ ଚାଲିଯାଉ । ପୁଣି ସେହି ସ୍ଥାନ ଦେଖି କୁହ । ତେବେ ଦୁହେଁ କହିବେ ଯେ ନା, ଏହା ସତ କଥା । ତୁମକୁ ବୁଝା ପଡ଼ିଲା ନା ? ମାତ୍ର ୩୬୦ ଡିଗ୍ରୀବାଲା ଭ୍ୟୁପଏଣ୍ଟ୍ ହିଁ ପୂର୍ଣ୍ଣ ଅଟେ । ତେଣୁ ଯାହାର ଯେଉଁ ଭ୍ୟୁପଏଣ୍ଟ୍, ସେ ସେହି ଭ୍ୟୁପଏଣ୍ଟ୍ ହିସାବରେ କୁହେ, ଯେ ମୋ କଥା ସତ । ଭ୍ୟୁପଏଣ୍ଟ୍ କେବେ ବି କମ୍ପ୍ଲିଟ୍ (ସମ୍ପୂର୍ଣ୍ଣ) ସତ ହୋଇ ନଥାଏ ।

କ୍ରିଷ୍ଟିୟନ ଭ୍ୟୁପଏଣ୍ଟ୍ ଅଛି, ମୁସଲମାନ୍ ଭ୍ୟୁପଏଣ୍ଟ୍ ଅଛି, ହିନ୍ଦୁ ଭ୍ୟୁଏପଣ୍ଟ୍ ଅଛି, ଜୈନ ଭ୍ୟୁପଏଣ୍ଟ୍ ଅଛି, ମାତ୍ର ଏସବୁ ଭ୍ୟୁପଏଣ୍ଟ୍ ଅଟେ । ସମସ୍ତେ ଗୋଟିଏ ହିଁ କଥା କହିବାକୁ ଚାହୁଁଛନ୍ତି । ସେଣ୍ଟର୍‌କୁ ଜାଣିବାକୁ ଚାହୁଁଛନ୍ତି, ତାହା ହିଁ ସମସ୍ତଙ୍କ ଇଚ୍ଛା । ମାତ୍ର ସେହି ସେଣ୍ଟର୍‌କୁ ନିଜ ଭ୍ୟୁପଏଣ୍ଟ୍‌ରେ ଦେଖନ୍ତି ଏବଂ କୁହନ୍ତି । ସବୁ ଧର୍ମ ଅଲଗା-ଅଲଗା ଡିଗ୍ରୀରେ ଅଛି, ସେଥିପାଇଁ ସମସ୍ତଙ୍କ ଭିତରେ ଝଗଡ଼ା ହୁଏ । କିନ୍ତୁ ଖୁଦାଙ୍କ ପାଖରେ ଝଗଡ଼ା ନାହିଁ । ଖୁଦାଙ୍କ ପାଖରେ ତ କ'ଣ ଯେ, ଗୋଟିଏ ହିଁ କଥା ଜାଣିବା ପାଇଁ ସମସ୍ତଙ୍କ ଭ୍ୟୁପଏଣ୍ଟ୍ ଅଲଗା ଅଟେ । ଲୋକେ କୁହନ୍ତି, ଏହି ଦୁନିଆ ଭଗବାନ ତିଆରି କରିଛନ୍ତି, God is the creator of this world ! ଏହି କଥା ତୁମ ଭ୍ୟୁପଏଣ୍ଟ୍‌ରେ ଠିକ ମାତ୍ର ଫ୍ୟାକ୍ଟ(ବାସ୍ତବିକତା) ଅନୁସାରେ ୧୦୦% (ଶତ ପ୍ରତିଶତ)

ମିଛ । ଫ୍ୟାକ୍ଟ ସର୍ବଦା ସିଦ୍ଧାନ୍ତିକ ହୋଇଥାଏ ଏବଂ ଭ୍ୟୁପଏଣ୍ଟ୍ ଭିନ୍ନ-ଭିନ୍ନ ହୋଇଥାଏ । ଫ୍ୟାକ୍ଟ ଅନୁସାରେ କେବଳ ସାଇଣ୍ଟିଫିକ୍ ସରକମ୍ସ୍ଟେନ୍ସିୟଲ୍ ଏଭିଡେନ୍ସ ଅଟେ ।

କାହାର ଭ୍ୟୁପଏଣ୍ଟ୍ ଖଣ୍ଡନ କରିବା ଉଚିତ ନୁହେଁ । ଯେପର୍ଯ୍ୟନ୍ତ ଫ୍ୟାକ୍ଟ ବୁଝା ନପଡ଼େ, ସେପର୍ଯ୍ୟନ୍ତ ସେମାନଙ୍କୁ ଭ୍ୟୁପଏଣ୍ଟ୍‌ରେ ହିଁ ରଖିବା ଉଚିତ ଏବଂ ତାହାପାଇଁ ହିଁ ସାହାଯ୍ୟ କରିବା ଉଚିତ । ମୁଁ ଏହିପରି ହିଁ କରେ । ତାଙ୍କ ଭ୍ୟୁପଏଣ୍ଟ୍‌ରେ ହିଁ ସାହାଯ୍ୟ କରେ । ଏହାଦ୍ୱାରା ସେମାନେ ଆଗକୁ ବଢ଼ିପାରିବେ । ଆଉ ଯାହାକୁ ଫ୍ୟାକ୍ଟ ବୁଝିବାର ଅଛି ତା'କୁ ଫ୍ୟାକ୍ଟ ବତାଏ । ଏହା ରିୟଲ୍ ଅଟେ, ବିଲକୁଲ ସାଇଣ୍ଟିଫିକ୍ ଅଟେ ଏବଂ ସାରା ଜଗତ ପାଇଁ ଅଟେ । ଯାହା ଦରକାର ତାହା ଏଠୁ ନେଇଯାଅ । ମୁଁ ସେଣ୍ଟର୍‌ରେ ଅଛି । ମୋତେ କାହା ସହ ମତଭେଦ ନାହିଁ ।

**ପ୍ରଶ୍ନକର୍ତ୍ତା :** ଉପନିଷଦରେ ମଧ୍ୟ କୁହାଯାଇଛି ଯେ ଈଶ୍ୱର କର୍ତ୍ତା ନୁହଁନ୍ତି ।

**ଦାଦାଶ୍ରୀ :** ଈଶ୍ୱର ଯଦି କର୍ତ୍ତା ହୋଇଥାନ୍ତେ ତେବେ ତାଙ୍କୁ ବି କର୍ମବନ୍ଧନ ହୋଇଥାନ୍ତା ।

**ପ୍ରଶ୍ନକର୍ତ୍ତା :** ମୋ ହୃଦୟରେ ବି ଏହି ପ୍ରଶ୍ନ ବହୁତ ଚାଲୁଥିଲା ଯେ ଈଶ୍ୱର କର୍ତ୍ତା କିପରି ? ଏବେ ଆପଣଙ୍କୁ ଭେଟିବା ଦ୍ୱାରା ମୋତେ ଏହା ସ୍ପଷ୍ଟ ହୋଇଗଲା ।

**ଦାଦାଶ୍ରୀ :** ଭଗବାନ ବୀତରାଗ ଅଟନ୍ତି । ବଡ଼ ବଡ଼ ମହାତ୍ମାମାନେ ମୋ ସହ କଥା ହେବାକୁ ଆସନ୍ତି । 'ଈଶ୍ୱର କର୍ତ୍ତା ଅଟନ୍ତି' ଏହି ବିଲିଫ୍ ତାଙ୍କର ଯାଏ ନାହିଁ । ତେବେ ମୁଁ ସେମାନଙ୍କୁ ପଚାରେ ଯେ ଭଗବାନ ଏସବୁ ତିଆରି କଲେ ତେବେ ଭଗବାନଙ୍କୁ କିଏ ତିଆରି କଲା ? ତେବେ ପୁଣି ସେମାନେ ନିରୁତ୍ତର ହୋଇଯାନ୍ତି । କଥା ଲଜିକଲ୍(ଯୁକ୍ତିଯୁକ୍ତ) ଅଟେ । ଯଦି ତିଆରି କରିବାବାଲା ଅଛନ୍ତି, ତେବେ ତାଙ୍କୁ ବି ତିଆରି କରିବାବାଲା ଥିବା ଉଚିତ ଏବଂ ତାଙ୍କୁ ବି ତିଆରି କରିବାବାଲା ଥିବା ଉଚିତ, ତାହା ଲଜିକ୍(ତର୍କ) ଅଟେ ।

ଭଗବାନ କିଛି ତିଆରି କରି ନାହାନ୍ତି । ତେବେ ପୁଣି ତାଙ୍କ ଉପରେ କାହିଁକି ଆରୋପ ଲଗାଉଛ ? ଭଗବାନ ତ ଭଗବାନ ଅଟନ୍ତି, ବୀତରାଗ ଅଟନ୍ତି । The world is the puzzle itself. God has not puzzled this world at all. ଯଦି ଭଗବାନ ଏହି ପଜ୍‌ଲ୍ କରିଥାନ୍ତେ ନା, ତେବେ ଏ ସିବିଆଇ ବାଲାଙ୍କୁ ଉପରକୁ ପଠାଇ ତାଙ୍କୁ ଜେଲରେ ଭର୍ତ୍ତି କରିବାକୁ ପଡ଼ିଥାନ୍ତା । ଭଗବାନ ଏହି

ଦୁନିଆ ହିଁ କାହିଁକି ତିଆରି କଲେ ଯେ ଯେଉଁଥିରେ ସମସ୍ତେ ଦୁଃଖୀ ଅଛନ୍ତି? ଭଗବାନ ଏହି ପଜ୍ଲ୍ କରିନାହାନ୍ତି।

God is not the creator of this world at all, only scientific circumstantial evidence (ଭଗବାନ ଏହି ଦୁନିଆର କର୍ତ୍ତା ବିଲକୁଲ ବି ନୁହଁନ୍ତି, କେବଳ ସାଇଣ୍ଟିଫିକ୍ ସରକମ୍ସ୍ଟେନ୍ସିୟଲ୍ ଏଭିଡେନ୍ସ) ଅଟେ। ଭଗବାନଙ୍କୁ ଏସବୁ ତିଆରି କରିବାର କୌଣସି ଆବଶ୍ୟକତା ହିଁ ନାହିଁ। ଏହି ଜଗତ କେହି ତିଆରି କରି ହିଁ ନାହିଁ। କାହିଁକିନା ଏ ଯେଉଁ ଜଗତ, ତାହାର ଯଦି ବିଗିନିଙ୍ଗ୍ (ଆରମ୍ଭ) ଥାଆନ୍ତା, ତେବେ ତାହାର ଏଣ୍ଡ୍ (ଅନ୍ତ) ବି ହୋଇଥାନ୍ତା। ମାତ୍ର ଏହି ଜଗତର ଆରମ୍ଭ ହିଁ ନାହିଁ, ତାହା ଅନାଦିରୁ ଅଛି ଏବଂ ଅନନ୍ତ ପର୍ଯ୍ୟନ୍ତ ରହିବ। ତାହା କେବେ କ୍ରିଏଟ୍ (ସର୍ଜନ) ହୋଇନାହିଁ ଏବଂ କେବେ ନାଶ ବି ହେବାର ନାହିଁ, ଏପରି ଅନାଦି-ଅନନ୍ତ ଅଟେ।

**ପ୍ରଶ୍ନକର୍ତ୍ତା :** ମାତ୍ର ଏ ଜଗତ ବିନାଶୀ ଅଟେ।

**ଦାଦାଶ୍ରୀ :** ନା, ତାହା ଅନାଦି-ଅନନ୍ତ ଅଟେ। ତାହା ପରମାନେଣ୍ଟ୍ (ଅବିନାଶୀ) ଅଟେ। ଯାହା ସନାତନ ଅଟେ ତାହାର ଆଦି ବି ନଥାଏ ଏବଂ ତାହାର ଅନ୍ତ ମଧ୍ୟ ନଥାଏ।

**ପ୍ରଶ୍ନକର୍ତ୍ତା :** ମନୁଷ୍ୟ ପାଇଁ ତ ଏ ଜଗତ ବିନାଶୀ ଅଟେ ନା?

**ଦାଦାଶ୍ରୀ :** ତାହା ଠିକ କଥା। ସେ କଥା ରିଲେଟିଭ୍ ଅଟେ। All these relatives are temporary adjustment, ମାତ୍ର ଜଗତ ତ ଅନାଦି-ଅନନ୍ତ ଅଟେ।

ତୁମକୁ କୌଣସି ଜିନିଷ ପରମାନେଣ୍ଟ୍ ଲାଗୁଛି?

**ପ୍ରଶ୍ନକର୍ତ୍ତା :** ଏମିତିରେ ଦେଖାଯାଏ ତେବେ ସବୁ ଟେମ୍ପରାରୀ(ବିନାଶୀ) ହିଁ ଅଟେ।

**ଦାଦାଶ୍ରୀ :** ହଁ, ଟେମ୍ପରାରୀ ଅଟେ, ତେବେ ପରମାନେଣ୍ଟ୍ କିଛି ଜିନିଷ ଅଛି?

**ପ୍ରଶ୍ନକର୍ତ୍ତା :** ପ୍ରକୃତି ହିଁ ପରମାନେଣ୍ଟ୍ ହୋଇପାରେ।

**ଦାଦାଶ୍ରୀ :** ପ୍ରକୃତି? ପ୍ରକୃତି ତ ନିରନ୍ତର ବଦଳି ହିଁ ଚାଲିଥାଏ। ତାହାର

ଗୋଟିଏ ଅବସ୍ଥାର ନାଶ ହୁଏ, ଅନ୍ୟ ଏକ ଅବସ୍ଥା ଉତ୍ପନ୍ନ ହୁଏ । ତାହା କିପରି ପରମାନେଣ୍ଟ୍ ହୋଇ ପାରିବ? ତେବେ ପୁଣି ପରମାନେଣ୍ଟ୍ କ'ଣ?

**ପ୍ରଶ୍ନକର୍ତ୍ତା :** ସେହି ପ୍ରୋସେସ୍(ପ୍ରକ୍ରିୟା) ତ ପରମାନେଣ୍ଟ୍ ଅଟେ ନା?

**ଦାଦାଶ୍ରୀ :** ତାହା ତ ଏକ ଅବସ୍ଥା ନାଶ ହୁଏ, ଅନ୍ୟ ଏକ ଅବସ୍ଥା ଉତ୍ପନ୍ନ ହୁଏ । ଏଥିରେ ପରମାନେଣ୍ଟ୍ କେଉଁ ଜିନିଷ ଅଟେ?

**ପ୍ରଶ୍ନକର୍ତ୍ତା :** ଯିଏ ନାଶ କରିବାବାଲା ଅଟେ ଏବଂ ଯିଏ ଉତ୍ପନ୍ନ କରିବାବାଲା ଅଟେ, ସେ ହିଁ ପରମାନେଣ୍ଟ୍?

**ଦାଦାଶ୍ରୀ :** ନାଶ କରିବାବାଲା କିଏ?

**ପ୍ରଶ୍ନକର୍ତ୍ତା :** ସବୁ ପ୍ରକୃତି ଅଟେ ।

**ଦାଦାଶ୍ରୀ :** ତୁମେ ପ୍ରକୃତିର ଡେଫିନେଶନ୍ (ପରିଭାଷା) ଠିକ ଦେଲ ନାହିଁ ।

**ପ୍ରଶ୍ନକର୍ତ୍ତା :** ତାହା ହିଁ ତ ନଲେଜ୍ (ଜ୍ଞାନ) । ପ୍ରକୃତିର ଡେଫିନେଶନ୍‌ର ଜ୍ଞାନ ଥିଲେ ମଣିଷକୁ ସବୁ ଜଣା ପଡ଼ିଯାନ୍ତା ଯେ ଏ ପ୍ରକୃତି କି ଜିନିଷ ଅଟେ!

**ଦାଦାଶ୍ରୀ :** ଖାଇସାରି ତୁମେ ଶୋଇ ଯାଉଛ, ପୁଣି ଭିତରେ କିଏ ଚଲାଉଛି? ଏଥିରେ ପିତ, ପାଚକ ରସ ସେସବୁ ତୁମେ ପକାଉଛ? ଆଉ ଚବିଶ ଘଣ୍ଟାରେ ଭୋଜନରୁ ବ୍ଲଡ୍ (ରକ୍ତ) ତିଆରି ହୋଇଯାଏ, ତାହା କିଏ ତିଆରି କରେ? ୟୁରିନ୍ (ପରିଶ୍ରା) କିଏ ତିଆରି କରେ? ସେସବୁ ପୃଥକ୍କରଣ ହୋଇଯାଏ, ତେବେ ସେସବୁ ପୃଥକ କିଏ କରେ? ତାହା କ'ଣ ଭଗବାନ କରିବାକୁ ଆସନ୍ତି? ତାହା କିଏ କରେ? ତାହା କାହାକୁ କରିବାକୁ ପଡ଼େ ହିଁ ନାହିଁ । ଜଗତ ଏହିପରି ଚାଲୁଅଛି, ପ୍ରକୃତି ଦ୍ୱାରା ହିଁ ଚାଲୁଅଛି ।

**ପ୍ରଶ୍ନକର୍ତ୍ତା :** ପ୍ରକୃତି କିଏ?

**ଦାଦାଶ୍ରୀ :** ପ୍ରକୃତି ଅର୍ଥାତ ସାଇଣ୍ଟିଫିକ୍ ସରକମ୍‌ସ୍ଟେନ୍ସିୟଲ୍ ଏଭିଡେନ୍ସ । ତୁମେ ଏଠାକୁ କିପରି ଆସିଲ? କେତେ ସାରା ସାଇଣ୍ଟିଫିକ୍ ସରକମ୍‌ସ୍ଟେନ୍ସିୟଲ୍ ଏଭିଡେନ୍ସ ମିଳେ ତେବେ କାମ ହୁଏ ।

2H(ହାଇଡ୍ରୋଜେନ୍) ଏବଂ ଗୋଟିଏ O(ଅକ୍ସିଜେନ୍) ଯଦି ସାଇଣ୍ଟିଷ୍ଟକୁ ଦେବା,

ତେବେ ସେ କୁହେ ଯେ ମୁଁ ଏହାର ପାଣି ତିଆରି କରିଦେବି । ମୁଁ କହିବି, କ'ଣ ତୁମେ ପାଣିର ମେକର(ତିଆରି କରିବାବାଲା) ଅଟ ? ତେବେ କହିବ, 'ହଁ ଆଜ୍ଞା, ମୋତେ 2H ଏବଂ ଗୋଟିଏ O ଦେଇ ଦିଅ, ତେବେ ମୁଁ ପାଣି ତିଆରି କରିଦେବି ।' ସେପର୍ଯ୍ୟନ୍ତ ତ ମେକର୍ କୁହାଯାଏ । ପୁଣି ଆମ ପାଖରେ 2H ଶେଷ ହୋଇଗଲା, one H ହିଁ ଅଛି ଏବଂ 2O ଅଛି ତେବେ ତାହାର ପାଣି କରିଦିଅ କହିବା, ତେବେ ସେ କ'ଣ କହିବ ଯେ, 'ଏହାର ହୋଇପାରିବ ନାହିଁ ।' ତେବେ ତୁମେ କ'ଣ ତିଆରି କରିବାବାଲା ଅଟ ? 2H ଏବଂ O ଏକାଠି ହୋଇଗଲା ତେବେ ପାଣି ହୋଇଯାଏ । ଉପରୁ ବର୍ଷାପାଣି ପଡ଼େ ନା, ସେଥିରେ କୌଣସି ଦେବା-ଦେବୀ କିଛି କରନ୍ତି ନାହିଁ । ତାହା ଆପେ ଆପେ ହିଁ ଏପରି ସଂଯୋଗ ଏକାଠି ହୋଇଯାଏ ଏବଂ ପାଣି ପଡ଼େ । ଏଥିରେ ତିଆରି କରିବାବାଲାର କୌଣସି ଆବଶ୍ୟକତା ନାହିଁ । ତାହା ସାଇଣ୍ଟିଫିକ୍ ସରକମ୍ସ୍ଟେନ୍ସିୟଲ୍ ଏଭିଡେନ୍ସ ଅଟେ ।

ଏକ ବ୍ୟକ୍ତି ଏବେ ବଞ୍ଚିଛି । କୌଣସି ଏକ ଔଷଧର ଡୋଜ୍ (ଔଷଧର ମାତ୍ରା) ତା'କୁ ପିଆଇଲେ ତେବେ ମରିଯାଏ, ତେବେ କିଏ ମାରିଦେଲା ? ଭଗବାନ ମାରିଦେଲେ ? କେହି ବ୍ୟକ୍ତି ମାରିଦେଲା ?

**ପ୍ରଶ୍ନକର୍ତ୍ତା :** ପୋଷ୍ଟମର୍ଟମ୍ (ମୃତ୍ୟୁ ପରେ ଡାକ୍ତରି ଜାଞ୍ଚ) କରିବା ଉଚିତ ।

**ଦାଦାଶ୍ରୀ :** ହଁ, ପୋଷ୍ଟମର୍ଟମ୍‌ରୁ ସତ କଥା ଜଣା ପଡ଼ିଯାଏ ଯେ କ'ଣ ହୋଇଛି । କ'ଣ ଜଣା ପଡ଼ିବ ଯେ କାହାଦ୍ୱାରା, ଔଷଧ ଦ୍ୱାରା ମରିଗଲା । ଏପରି ସରକମ୍ସ୍ଟେନ୍ସିୟଲ୍ ଏଭିଡେନ୍ସ ଏକାଠି ହୋଇଗଲା ଯାହାଦ୍ୱାରା ସେ ମରିଗଲା । ତା'କୁ ଏତିକି ବିଷ ଦେଇଦେଲେ ଯେ ବିଷ ହିଁ ମାରେ । ଭଗବାନ ବି ମାରନ୍ତି ନାହିଁ ଏବଂ ବିଷ ଦେବାବାଲା ବି ମାରେ ନାହିଁ । ବିଷ ଦେବାବାଲା ବିଷ ଦେଲା ଏବଂ ବାନ୍ତି ହୋଇଗଲା ତେବେ ବିଷ ବାହାରି ଗଲା, ତେବେ ମରିବ ନାହିଁ । ବିଷ ଦେବାବାଲା ଯଦି ମାରିବାବାଲା ହୋଇଥାନ୍ତା ତେବେ ସେ ବ୍ୟକ୍ତି ନିଶ୍ଚିତ ମରିଯାନ୍ତା, କିନ୍ତୁ ବିଷ ହିଁ ମାରେ । ଭଗବାନ ଏଥିରେ ହାତ ମାରନ୍ତି ହିଁ ନାହିଁ ।

ଏହା କେବଳ ବିଜ୍ଞାନ ଅଟେ । ତୁମ ବଡୀ (ଶରୀର) କିପରି ତିଆରି ହେଲା, ତାହା ମଧ୍ୟ କେବଳ ବିଜ୍ଞାନ ଅଟେ । ଏହି ଜଗତ ଏହିପରି ବିଜ୍ଞାନ ଦ୍ୱାରା ହିଁ ଚାଲୁଅଛି । ଏହି ବଡୀ ମଧ୍ୟ ଏହିପରି ବିଜ୍ଞାନ ଦ୍ୱାରା ହିଁ ଉତ୍ପନ୍ନ ହୁଏ । ଏଥିରେ କୌଣସି ବ୍ରହ୍ମାଙ୍କ ଆବଶ୍ୟକତା ନାହିଁ, ବିଷ୍ଣୁଙ୍କ ଆବଶ୍ୟକତା ନାହିଁ, ମହେଶ୍ୱରଙ୍କ ଆବଶ୍ୟକତା ନାହିଁ ।

ଭଗବାନ ଏହି ବଡୀ ତିଆରି କରନ୍ତି ନାହିଁ, କିନ୍ତୁ ଭଗବାନଙ୍କ ଉପସ୍ଥିତି (Presence) ଥିବା ଦରକାର । ଭଗବାନ ଅଛନ୍ତି ସେଥିପାଇଁ ହୁଏ, ନହେଲେ ହୁଅନ୍ତା ନାହିଁ ।

**ପ୍ରଶ୍ନକର୍ତ୍ତା :** ଏହି ସାଇଣ୍ଟିଫିକ୍ ସରକମ୍‌ସ୍ଟେନ୍ସିୟଲ୍ ଏଭିଡେନ୍ସ (Scientific circumstantial evidence) କୁ ଟିକିଏ ବିସ୍ତାରରେ ବୁଝାନ୍ତୁ ।

**ଦାଦାଶ୍ରୀ :** ହଁ, ତୁମେ ମୋତେ ଭେଟିବାକୁ କିପରି ଆସିଲ ? ତୁମକୁ ଯେତିକି ଦେଖାଯାଉଛି (ଜଣା ପଡୁଛି), ସେତିକି କହୁଛ ଯେ ମୋତେ ଏ 'ଭାଇ' କହିଲା ଯେ 'ଜ୍ଞାନୀପୁରୁଷ' ଏଠାକୁ ଆସିବାର ଅଛନ୍ତି । ସେହି କଥାରୁ ତୁମେ ବିଚାର କଲ ଯେ 'ଚାଲ, ଆଜି ଯିବା ।' ତୁମେ ଏଠାକୁ ଆସିଲ, ମୋର ବାହାରକୁ ଯିବାର ଥିଲା କିନ୍ତୁ ଗଲି ନାହିଁ । ତୁମକୁ ଦର୍ଶନ ହୋଇଗଲା । ଏହା ପଛରେ କେତେ କଜେଜ୍(କାରଣ) ଅଛି ? ଯାହା ଦେଖାଯାଉଛି କେବଳ ସେତିକି କଜେଜ୍ ନାହିଁ, ବହୁତ କଜେଜ୍ ଅଛି । ଏଥିରୁ ଯଦି ଗୋଟିଏ କଜ୍ ନ ମିଳେ, ତେବେ କାମ ହୁଏ ନାହିଁ । ତୁମକୁ ଜଣା ନାହିଁ ଯେ ଏହା କେଉଁ କେଉଁ କଜେଜ୍‌ରୁ ହୋଇଛି । ଏହି କଜେଜ୍ ସବୁକୁ ସାଇଣ୍ଟିଫିକ୍ ଏଥିପାଇଁ କହିଲି ଯେ ଏଥିରେ ବହୁତ ଗୂଢ଼ କଜେଜ୍ ଅଛି । ତୁମକୁ ଅଳ୍ପ କିଛି ବୁଝା ପଡ଼ିଲା ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ଲୋକ କୁହନ୍ତି ଯେ ଭଗବାନ ଆମ ପୁଅକୁ ମାରିଦେଲେ, ଆମର ବହୁତ କ୍ଷତି କରିଦେଲେ । ଏସବୁ ମିଥ୍ୟା ଅଟେ । ଏପରି କହିବା ଉଚିତ ନୁହେଁ । ଭଗବାନ ତ ଭଗବାନ ହିଁ ଅଟନ୍ତି !! କେବେ ସେ କୌଣସି ଦୋଷ କରି ନାହାନ୍ତି ।

ତୁମେ ନିଜ ସ୍ତ୍ରୀ ସହିତ ଟେବୁଲ ଉପରେ ଆରାମରେ ଖାଉଥିବ, ପୁଣି ପାଞ୍ଚ ମିନିଟ ପରେ କିଛି ମତଭେଦ ହୋଇଯାଏ, ତେବେ ସେହି ମତଭେଦ କିଏ କରାଇଲା ? ତୁମକୁ ପଚାରିବି ଯେ 'କଣ ତୁମର ଇଚ୍ଛା ଥିଲା ? ତୁମ ଇଚ୍ଛାରେ ମତଭେଦ ହେଲା ?' ତେବେ ତୁମେ ନା କହିବ । ସ୍ତ୍ରୀକୁ ପଚାରିବା ତେବେ ସେ ମଧ୍ୟ ନା କହିବ । ତେବେ ପୁଣି ଏହି ମତଭେଦ କିଏ କରାଇଲା ?

**ପ୍ରଶ୍ନକର୍ତ୍ତା :** ରିଲେଟିଭ କ୍ୟାରେକ୍ଟର୍ (ବ୍ୟବହାରିକ ଚରିତ୍ର), ମନ, ଟେମ୍ପରାମେଣ୍ଟ୍(ସ୍ୱଭାବ) ଏସବୁ ଉପରେ ଆଧାରିତ ଅଟେ ।

**ଦାଦାଶ୍ରୀ :** ତାହା ତ ସବୁ ଭିଜିବଲ୍ କଜେଜ୍ (ଦେଖାଯାଉଥିବା କାରଣ) ଅଟେ । ବାସ୍ତବ କାରଣ (Real causes) ଦରକାର । ଭିଜିବଲ୍ କଜ୍ ତ ଆଖିକୁ ଦେଖାଯାଏ, କାନକୁ ଶୁଣାଯାଏ, ତାହା ।

**ପ୍ରଶ୍ନକର୍ତ୍ତା :** ସାଇଣ୍ଟିଷ୍ଟଙ୍କ ପ୍ରକ୍ରିୟାରୁ ତ ଆମକୁ ଭିଜିବଲ୍ କଜେଜ୍ ହିଁ ଦେଖିବାକୁ ପଡ଼େ ନା ?

**ଦାଦାଶ୍ରୀ :** ତୁମ ପାଖରେ ଅନ୍ୟ କୌଣସି ଚାରା ନାହିଁ । ତେବେ ଏହି ମତଭେଦ କିଏ କରାଏ ?

**ପ୍ରଶ୍ନକର୍ତ୍ତା :** କେହି ଏ ଶକ୍ତିକୁ ଭଗବାନ କୁହେ, କେହି ପ୍ରକୃତି କୁହେ, କେହି ଅଦୃଶ୍ୟ ଶକ୍ତି କୁହେ କିନ୍ତୁ କେହି ତାହାର ନାଁ କୁହନ୍ତି ନାହିଁ ।

**ଦାଦାଶ୍ରୀ :** ତାହା ଗୋଟିଏ ହିଁ ଶକ୍ତି । ତାହାର ଆଧାରରେ ସବୁ ଚାଲେ । ଅନ୍ୟ କେହି ମ୍ୟାନେଜର(ପ୍ରବନ୍ଧକ) ନାହିଁ । ଆଉ ଏହି ଶକ୍ତି ବି କମ୍ପ୍ୟୁଟର ପରି ଅଟେ । ସେଥିରେ ଚେତନ ନାହିଁ । ସେଥିରେ ଯଦି ଚେତନ ଥାଆନ୍ତା ତେବେ ଭଗବାନଙ୍କ ଉପରେ ହିଁ ଆରୋପ ଲାଗିଥାନ୍ତା ଯେ ସେ ହିଁ ଚଲାଉଛନ୍ତି । ସେହି ଶକ୍ତିଦ୍ୱାରା ସବୁ କିଛି ଚାଲୁଛି । ତୁମକୁ ବାସ୍ତବିକତା ଜାଣିବାର ବିଚାର ଅଛି ?

**ପ୍ରଶ୍ନକର୍ତ୍ତା :** ହଁ, ବାସ୍ତବିକତା ହିଁ ଦରକାର ।

**ଦାଦାଶ୍ରୀ :** By fact the God is not creator of this world at all. Only scientific circumstantial evidene.

**ପ୍ରଶ୍ନକର୍ତ୍ତା :** Who generate these evidence (ଏହି ସଂଯୋଗ କିଏ ସୃଷ୍ଟି କରେ) ?

**ଦାଦାଶ୍ରୀ :** ହଁ, ସେ ଏକ ଶକ୍ତି ଅଛି, ଯିଏ ସବୁ ସଂଯୋଗ ଏକାଠି (evidences generate) କରେ ।

**ପ୍ରଶ୍ନକର୍ତ୍ତା :** ସେ ଶକ୍ତି କିଏ ?

**ଦାଦାଶ୍ରୀ :** ମୁଁ ତାହାର ନାମ 'ବ୍ୟବସ୍ଥିତ ଶକ୍ତି' ଦେଇଛି । ସେ 'ବ୍ୟବସ୍ଥିତ ଶକ୍ତି', ଏହି ଦୁନିଆକୁ ବ୍ୟବସ୍ଥିତ (ସୁଚାରୁ ରୂପେ) ହିଁ ରଖେ । ସୂର୍ଯ୍ୟ, ଚନ୍ଦ୍ର, ତାରା ସମସ୍ତଙ୍କୁ ବ୍ୟବସ୍ଥିତ ରଖେ । ଅନାଦି କାଳରୁ ବ୍ୟବସ୍ଥିତ ହିଁ ରଖେ । ସବୁ ଜୀବଙ୍କ

ଆସିବା-ଯିବା, ତୁମ ସଂସାର ବି ସେହି ଶକ୍ତି ହିଁ ଚଲାଏ, ନିରନ୍ତର ! ପ୍ରତ୍ୟେକ ଜୀବଙ୍କୁ 'ବ୍ୟବସ୍ଥିତ ଶକ୍ତି' ହିଁ ଚଲାଏ । ପ୍ରତ୍ୟେକ ଦିନ କେବଳ ସେହି ଶକ୍ତି କାମ କରେ । ସବୁ ସଂଯୋଗ ଏକାଠି କରିବା ହିଁ ତା'ର କାମ, ତା'ର ଅନ୍ୟ କୌଣସି କାମ ନାହିଁ । ଯେପରି ସେ ବଡ଼ କମ୍ପ୍ୟୁଟର ଥାଏ ନା, ସେହିପରି ତା'ର କାମ ।

**ପ୍ରଶ୍ନକର୍ତ୍ତା :** ଏ କମ୍ପ୍ୟୁଟର କଥା ବୁଝି ହେଲା ନାହିଁ ।

**ଦାଦାଶ୍ରୀ :** ମାନି ନିଅ, ତୁମେ ବିଚାର କଲ ଯେ ମନ୍ଦିର ତିଆରି କରିବାର ଆବଶ୍ୟକତା ଅଛି । ଏଠି ତୁମେ ଏହି ବିଚାର କଲ, ସେହି ବିଚାର ବଡ କମ୍ପ୍ୟୁଟରରେ, ଯାହା 'ବ୍ୟବସ୍ଥିତ ଶକ୍ତି' ଅଟେ, ସେଥିରେ ଫିଡ୍ ହୋଇଯାଏ । ତୁମେ ବିଚାର କରିଥିଲ, ତାହା କଜ୍ (କାରଣ) ଅଟେ, ସେହି କଜ୍ 'ବ୍ୟବସ୍ଥିତ ଶକ୍ତି' ପାଖକୁ ଚାଲିଯାଏ । 'ବ୍ୟବସ୍ଥିତ ଶକ୍ତି' ଏହାର ଇଫେକ୍ଟ (ପରିଣାମ) ରୂପରେ ସବୁ ସଂଯୋଗ ଏକାଠି କରିଦିଏ । ପରେ ତୁମକୁ ଏହାର ଫଳ ମିଳେ । ପରେ ତୁମେ ମନ୍ଦିର ତିଆରି କରିଦିଅ । ତୁମେ ତ ଅହଙ୍କାରରେ କହୁଛ, 'ଏହା ମୁଁ କଲି', ମାତ୍ର ସେ ସବୁ 'ବ୍ୟବସ୍ଥିତ ଶକ୍ତି' ହିଁ ଚଲାଏ ।

ଏହିପରି ଯେଉଁ ପରିଣାମ ଆସେ, ତାହା 'ବ୍ୟବସ୍ଥିତ ଶକ୍ତି' ର କାମ ଅଟେ, ଏହା ମୁଁ ଜ୍ଞାନରେ ଦେଖି କହୁଛି । 'ବ୍ୟବସ୍ଥିତ ଶକ୍ତି' ଏକ୍‌ଜାକ୍ଟ (ଯଥାର୍ଥ) ଅଟେ । ଏହା ମୋର ଲକ୍ଷ-ଲକ୍ଷ ଜନ୍ମର ଅନୁସନ୍ଧାନ ।

**ପ୍ରଶ୍ନକର୍ତ୍ତା :** ବ୍ୟବସ୍ଥିତ ଶକ୍ତିକୁ ଭଗବାନ କହିପାରିବୁ ?

**ଦାଦାଶ୍ରୀ :** ନା, 'ବ୍ୟବସ୍ଥିତ ଶକ୍ତି'କୁ ଭଗବାନ କହିବାରେ କ'ଣ ଫାଇଦା ? ଏହି ଟେପରେକର୍ଡ଼କୁ ଯଦି ଭଗବାନ କହିବା ତେବେ କ'ଣ ଫାଇଦା ? ଭଗବାନଙ୍କୁ ଭଗବାନ କହିବା ଉଚିତ, ଆଉ ଟେପରେକର୍ଡ଼କୁ ଟେପରେକର୍ଡ଼ କହିବା ଉଚିତ । ଯେଉଁଠି ଭଗବାନ ନାହାନ୍ତି, ସେଠି ଭଗବାନର ଆରୋପଣ କଲେ କ'ଣ ଫାଇଦା ? ମାତ୍ର ସାରା ଜଗତ 'ବ୍ୟବସ୍ଥିତ ଶକ୍ତି' କୁ ହିଁ ଭଗବାନ କହୁଛି ।

'ବ୍ୟବସ୍ଥିତ'କୁ ଯଦି ଭଗବାନ କହିବା ତେବେ ସେ ଲେଟର୍ (ଚିଠି)କୁ 'ବ୍ୟବସ୍ଥିତ' ସ୍ୱୀକାର କରେ ନାହିଁ, କାହିଁକିନା ସେଥିରେ ଠିକଣା ଭଗବାନଙ୍କର ଅଛି । ଆଉ 'ବ୍ୟବସ୍ଥିତ' ନିଜେ ଭଗବାନ ନୁହେଁ, ତେବେ ସେଠାରୁ ଲେଟର୍ ଫେରି ଆସି ଭଗବାନଙ୍କ ପାଖକୁ ଯାଏ । ଏହିପରି ଆମ ଦରଖାସ୍ତ ଭଗବାନଙ୍କ ପାଖକୁ ହିଁ ଯାଏ ।

ଏହାଦ୍ୱାରା ଫାଇଦା ମିଳେ । ଏପରି ପ୍ରାର୍ଥନା କରିବାଦ୍ୱାରା ପରୋକ୍ଷ ଫାଇଦା ମିଳେ । ମାତ୍ର ସମ୍ପୂର୍ଣ୍ଣ ଫାଇଦା ତ ଭଗବାନଙ୍କୁ ଚିହ୍ନିବା ଦ୍ୱାରା ହୋଇଥାଏ । ଯଥାର୍ଥ ରୂପରେ ଭଗବାନ କିଏ, ଏହା ଜାଣିବା ଉଚିତ ।

ପରୋକ୍ଷ ଭଗବାନଙ୍କ ଆରାଧନା କରିବା ତେବେ ମଧ୍ୟ ଫାଇଦା ମିଳେ । କିଛି ନା କିଛି ତ କରିବା ହିଁ ଉଚିତ । ତାହାଦ୍ୱାରା 'light' (ପ୍ରକାଶ) ରୁହେ, ସଦ୍‌ବୁଦ୍ଧି ରୁହେ, ନହେଲେ ତାହା ମଧ୍ୟ ଚାଲିଯାଏ ।

**ପ୍ରଶ୍ନକର୍ତ୍ତା :** ଆମ ଉପରେ 'ବ୍ୟବସ୍ଥିତ ଶକ୍ତି'ର କୃପା ରହୁ, ସେଥିପାଇଁ କ'ଣ କରିବା ଉଚିତ ?

**ଦାଦାଶ୍ରୀ :** ଦୁନିଆରେ ଅନ୍ୟ କେହି କୃପା ରଖିବା ବାଲା ହିଁ ନାହିଁ । ତୁମ ଭିତରେ ଯେଉଁ ଭଗବାନ ଅଛନ୍ତି, ତାଙ୍କର କୃପା ହୋଇଥାଏ । ଅନ୍ୟ କେହି କୃପା ରଖିବାବାଲା ନାହିଁ ।

'ବ୍ୟବସ୍ଥିତ' ର ଏକଜାକ୍ଟ ସ୍ୱରୂପ ସଂକ୍ଷେପରେ ବତାଇ ଦେଉଛି ।

ଦେଖ, ଏହି ଡ୍ରାମା ହୁଏ, ତେବେ ତାହାର ରିହର୍ସଲ ପ୍ରଥମେ ହୁଏ, ପରେ ଡ୍ରାମା ହୁଏ । ସେହି ସମୟରେ କିଛି ବିଚାର କରିବାର ଆବଶ୍ୟକତା ନାହିଁ, କାହିଁକିନା ରିହର୍ସଲ ହୋଇ ସାରିଛି । ସେହିପରି ହିଁ ହେବ । ତାହା 'ବ୍ୟବସ୍ଥିତ' ହିଁ ଅଟେ । ଯାହାର ରିହର୍ସଲ ତୁମେ ଦେଖିଛ, ତାହାର ଏବେ ଡ୍ରାମା ହୋଇଯିବ ତେବେ ତାହା 'ବ୍ୟବସ୍ଥିତ' ହିଁ ଅଟେ । ସେଥିରେ ପରିବର୍ତ୍ତନ ହୁଏ ନାହିଁ । ଯେପରି ରିହର୍ସଲ କରିଛ ସେହିପରି ଏବେ ହୋଇଯିବ । ପୂର୍ବ ଜନ୍ମରେ ଯେପରି ତା'ର ରିହର୍ସଲ ହୋଇଥାଏ, ପରେ ଏହି ଜନ୍ମରେ ସେହିପରି ତା'ର 'ବ୍ୟବସ୍ଥିତ' ହୋଇଯାଏ । ପୁଣି 'ବ୍ୟବସ୍ଥିତ'ରେ ସେ ଚାଲେ । ପୂର୍ବ ଜନ୍ମରେ ଯେଉଁ ରିହର୍ସଲ ହୋଇଥାଏ ତାହା 'ଅବସ୍ଥିତ' ରୂପରେ ହୋଇଥାଏ ଏବଂ ସେହି ଅବସ୍ଥିତ ଯେବେ ଫଳ ଦେବାକୁ ପ୍ରସ୍ତୁତ ହୁଏ, ତେବେ ତାହା 'ବ୍ୟବସ୍ଥିତ' ହୁଏ । ତେବେ ଏଥିରେ ଜନ୍ମରୁ ନେଇ ମୃତ୍ୟୁ ପର୍ଯ୍ୟନ୍ତ କିଛି ପରିବର୍ତ୍ତନ ହେବାର ନାହିଁ ।

**ପ୍ରଶ୍ନକର୍ତ୍ତା :** ପ୍ରକୃତିର ଯେଉଁ ଲ' (ନିୟମ), ତାହା ହିଁ 'ବ୍ୟବସ୍ଥିତ'ର ଲ' ଅଟେ ନା ତାହା ହିଁ 'ବ୍ୟବସ୍ଥିତ' ଅଟେ ? ଉଭୟ ଜଣେ ହିଁ ଅଟନ୍ତି ନା ଅଲଗା-ଅଲଗା ?

**ଦାଦାଶ୍ରୀ :** ପ୍ରକୃତିର ବ୍ୟବସ୍ଥା ବିଲକୁଲ ନିୟମରେ ଅଛି । ଆଉ 'ବ୍ୟବସ୍ଥିତ'

ତ ଯେଉଁ ସବୁ ଜୀବମାନେ ଅଛନ୍ତି, ସେମାନେ ସବୁ 'ବ୍ୟବସ୍ଥିତ'ରେ ଅଛନ୍ତି । କ'ଣ ହୋଇଯିବ, କ'ଣ ନାହିଁ, ସବୁ ତାହାର ପୂର୍ବରୁ ହିସାବ ଆସି ସାରିଛି । ପ୍ରକୃତିର ନିୟମ ସେଥିରେ ସହାୟତା କରେ । 'ବ୍ୟବସ୍ଥିତ' ତ ପୂର୍ବ ଜନ୍ମରୁ, ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଏହି ଫିଲ୍ମ ହୋଇଯାଇଛି । ଏହି ଗ୍ଲାସ୍(କାଚ) ଭାଙ୍ଗିଗଲା ତେବେ ସେହି ଗ୍ଲାସ୍ ତ ପୂର୍ବରୁ ଭାଙ୍ଗି ଯାଇଛି, ମାତ୍ର ଏବେ ତାହା ଦେଖାଯାଏ । ଏହି ଜଗତ ଏପରି ଅଟେ ଯେ ଏକ ପରମାଣୁ ବି କେବେ ବଢ଼େ ନାହିଁ, କେବେ କମ ହୁଏ ନାହିଁ । ଅବିନାଶୀରେ ସବୁ ଜିନିଷ ସେମିତି ହିଁ ରହେ । ଆଉ ଯେଉଁ ସବୁକିଛି ହୁଏ ତାହା ବିନାଶୀରେ ହୁଏ । ଅବସ୍ଥା ସବୁ ବିନାଶୀ ଅଟେ ଏବଂ ବିନାଶୀରେ ଦେଖାଯାଏ ଯେ ସେ ମରିଗଲା । ମାତ୍ର ଅବିନାଶୀରେ କେହି ମରେ ହିଁ ନାହିଁ । ଇଏ ମରିଗଲା, ଏମିତି ହୋଇଗଲା, ସେମିତି ହୋଇଗଲା, ସେ ସବୁ ରଙ୍ଗ୍ ବିଲିଫ୍‌ରେ, ରାଇଟ୍ ବିଲିଫ୍‌ରେ ଏପରି ହୁଏ ହିଁ ନାହିଁ ।

**ପ୍ରଶ୍ନକର୍ତ୍ତା :** ଆପଣ କୁହନ୍ତି ଯେ 'ସବୁ ଜିନିଷର ନିର୍ମାଣ ହୋଇ ସାରିଛି, ନିଶ୍ଚିତ ଅଟେ', ତେବେ ତାହା କ'ଣ ?

**ଦାଦାଶ୍ରୀ :** ଯାହା ନିର୍ମାଣ ହୋଇଛି (ହୋଇ ସାରିଛି) ତାହା ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ୍ ଏଭିଡେନ୍ସ (ବ୍ୟବସ୍ଥିତ) ଅଟେ ଆଉ ନିର୍ମାଣ ହୋଇନାହିଁ (ଏପର୍ଯ୍ୟନ୍ତ ହୋଇନାହିଁ) ତାହା ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ୍ ଏଭିଡେନ୍ସ ନୁହେଁ । ଯାହା ଡିସ୍‌ଚାର୍ଜ ହୋଇଛି, ତାହା ନିର୍ମାଣ ହୋଇଛି, ତାହା ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ୍ ଏଭିଡେନ୍ସ ଅଟେ । ଏବେ ତୁମେ ଏଠି ସତ୍‌ସଙ୍ଗକୁ ଆସିଲ ତାହା ଡିସ୍‌ଚାର୍ଜ ଅଟେ, ବ୍ୟାପାର କଲ ତାହା ଡିସ୍‌ଚାର୍ଜ (କର୍ମଫଳ) ଅଟେ, ଶୋଇଲ ତାହା ମଧ୍ୟ ଡିସ୍‌ଚାର୍ଜ ଅଟେ, ସାରାଦିନ ସବୁ ଡିସ୍‌ଚାର୍ଜ ହିଁ ଅଟେ । ମୋ ସହିତ କଥା ହେଉଛ, ତାହା ମଧ୍ୟ ଡିସ୍‌ଚାର୍ଜ ଅଟେ । ଏବଂ ଡିସ୍‌ଚାର୍ଜ ସବୁ ନିର୍ମାଣ ହୋଇଯାଇଛି ଆଉ (ନୂଆ) ଚାର୍ଜ, ତାହା (ଏପର୍ଯ୍ୟନ୍ତ) ନିର୍ମାଣ ହୋଇନାହିଁ । ଚାର୍ଜ ଆମ ହାତରେ ଅଛି ।

ଜଗତ କେବଳ ନିର୍ମାଣ ନୁହେଁ । ଚାର୍ଜ ବି ଅଟେ ଏବଂ ଡିସ୍‌ଚାର୍ଜ ବି ଅଟେ । ସେହି ଡିସ୍‌ଚାର୍ଜ ସବୁ ନିର୍ମାଣ ହୋଇସାରିଛି । ଯେଉଁ ବ୍ୟାଟେରୀ ଡିସ୍‌ଚାର୍ଜ ହୁଏ, ତାହା ନିର୍ମାଣ ହୋଇସାରିଛି । ଯେପରି ଚାର୍ଜ ହୋଇଥିଲା, ସେହିପରି ହିଁ ଡିସ୍‌ଚାର୍ଜ ହୋଇଯିବ ।

ଅହଙ୍କାର ହିଁ ସଂସାର ଅଟେ । ଯଦି ଅହଙ୍କାର ଏବଂ ମମତା ଚାଲିଯାଏ ତେବେ ପୁଣି ମୋକ୍ଷ ହୋଇଯାଏ । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଯାହା କିଛି ବି ହୁଏ, ଯେଉଁ ଯେଉଁ ଅବସ୍ଥା ସବୁ ହୁଏ, ପଢ଼ିବାର, ଖେଳିବାର, ରୋଗର, ଚାକିରୀ କରେ, ବିବାହ କରେ,

ବ୍ରହ୍ମଚର୍ଯ୍ୟ ଆଶ୍ରମ, ସନ୍ୟାସ ଆଶ୍ରମ, ସେ ସବୁ ଡିସ୍‌ଚାର୍ଜ ହିଁ ଅଟେ । ଭିତରେ ଯଦି ନୂଆ ଚାର୍ଜ ନହେବ, ତେବେ ଆଗାମୀ ଜନ୍ମ ବନ୍ଦ ହୋଇଯାଏ, ମାତ୍ର ଯେଉଁ ଡିସ୍‌ଚାର୍ଜ ଅଛି ତାହା ତ ଡିସ୍‌ଚାର୍ଜ ହିଁ ରୁହେ । ଚାର୍ଜ କରିବାବାଲା ଅହଙ୍କାର ଏବଂ ମମତା ଯଦି ଚାଲିଯାଏ, ତେବେ ଡିସ୍‌ଚାର୍ଜ ତ ବହୁତ ଭଲ ରୂପେ ହୋଇଯାଏ ଏବଂ ମୋକ୍ଷ ହୋଇଯାଏ ।

ଆଚରଣ ଡିସ୍‌ଚାର୍ଜ ଅଟେ । ଆଚରଣ ଯେଉଁ ହୁଏ, *ଆଚାର*, ତାହା ଡିସ୍‌ଚାର୍ଜ ଅଟେ ଏବଂ ଚାର୍ଜ ଯେବେ ବନ୍ଦ ହୋଇଯାଏ ତେବେ ପୁଣି ଡିସ୍‌ଚାର୍ଜ ସବୁ ପୂରା ହୋଇଯିବ । ତେବେ ପ୍ରଥମେ କ'ଣ କରିବାର ଅଛି ?

**ପ୍ରଶ୍ନକର୍ତ୍ତା :** ଚାର୍ଜ ବନ୍ଦ କରିବାର ଅଛି ।

**ଦାଦାଶ୍ରୀ :** ତେବେ ତୁମକୁ କର୍ମବନ୍ଧନ ହେଉଛି କି ନାହିଁ ?

**ପ୍ରଶ୍ନକର୍ତ୍ତା :** ତାହା ତ ହେଉଛି ।

**ଦାଦାଶ୍ରୀ :** ଦେଖ, ଯେତେବେଳେ ତୁମେ କହୁଛ ଯେ 'ଏହା ମୁଁ କଲି ।' ସେତେବେଳେ ଚାର୍ଜ ହୁଏ । ମୁଁ ବି କହେ ଯେ ଏହା ମୁଁ କଲି ମାତ୍ର ମୁଁ ନାଟକୀୟ କହେ ଏବଂ ତୁମେ ସତରେ କୁହ ।

**ପ୍ରଶ୍ନକର୍ତ୍ତା :** ମାତ୍ର ମୁଁ କଲି, ମୁଁ କର୍ତ୍ତା ଅଟେ ଏପରି ମୋତେ କେବେ ଲାଗେ ନାହିଁ ।

**ଦାଦାଶ୍ରୀ :** ତେବେ ତୁମେ କିଏ ?

**ପ୍ରଶ୍ନକର୍ତ୍ତା :** ତାହାର ସନ୍ଧାନରେ ଅଛି ।

**ଦାଦାଶ୍ରୀ :** ତେବେ ପୁଣି ତୁମେ ନିଜେ କର୍ତ୍ତା ଅଟ । ଏବେ ତ ତୁମକୁ 'ମୁଁ କଲି' ତାହାର ଦାୟିତ୍ୱଭାର ଲାଗୁଛି । ମାତ୍ର ଯେବେ ତୁମକୁ Self realise (ଆତ୍ମସାକ୍ଷାତ୍କାର) ହୋଇଯିବ, ପରେ ତୁମର ଦାୟିତ୍ୱଭାର ରହିବ ନାହିଁ । ତୁମେ ମାନ ବା ନମାନ କିନ୍ତୁ ଯେପର୍ଯ୍ୟନ୍ତ ସାକ୍ଷାତ୍କାର କରି ନାହଁ ସେପର୍ଯ୍ୟନ୍ତ ଦାୟିତ୍ୱଭାର ତୁମର ହିଁ ଅଟେ ।

କେବଳ ଆତ୍ମା ହିଁ ଜାଣିବାର ଅଛି । ଯେପର୍ଯ୍ୟନ୍ତ ଆତ୍ମାର ଜ୍ଞାନ ନଥିବ ସେପର୍ଯ୍ୟନ୍ତ ସବୁ ଦ୍ୱିବିଧା ଲାଗିବ ଆଉ ଆତ୍ମାର ଜ୍ଞାନ ହୋଇଗଲା ତେବେ ଦ୍ୱିବିଧା ସବୁ ଚାଲିଯିବ ।

ଦ୍ୱିବିଧା ଯୋଗୁଁ ହିଁ ଏ ସବୁ ବୋଝ । Self realisation(ଆତ୍ମସାକ୍ଷାତ୍କାର) ହୋଇଯିବା ମାତ୍ରେ ସବୁ ପଜ୍‌ଲ୍ ସଲ୍‌ଭ ହୋଇଯାଏ । When this puzzle ends, then no puzzle and there is the soul (ଯେବେ ଏହି ପଜ୍‌ଲ୍ ସଲ୍‌ଭ ହୋଇଯିବ, ସେତେବେଳେ ଅନ୍ୟ କୌଣସି ପଜ୍‌ଲ୍ ରହିବ ନାହିଁ ଏବଂ ସେହିଠାରେ ଆତ୍ମା ଅଛି) ।

**ପ୍ରଶ୍ନକର୍ତ୍ତା :** ଆପଣ ପଜ୍‌ଲ୍‌ର ଅନ୍ତ ବତାଇ ଦେଲେ ତେବେ ଏହି ପଜ୍‌ଲ୍‌ର ଆଦି କେଉଁଠୁ ?

**ଦାଦାଶ୍ରୀ :** There is no begining and no end to this puzzle. Where there is a begining, there is a end ! (ଏହି ପଜ୍‌ଲ୍‌ର ନା ତ ଆରମ୍ଭ ଅଛି, ନା ହିଁ ଅନ୍ତ । ଯେଉଁଠି ଆରମ୍ଭ ଥାଏ, ସେଠି ଅନ୍ତ ଥାଏ ।)

**ପ୍ରଶ୍ନକର୍ତ୍ତା :** ତେବେ କିଏ କରାଉଛି ?

**ଦାଦାଶ୍ରୀ :** ତାହା ଶକ୍ତି ଅଟେ । ଏକ ବଡ଼ କମ୍ପ୍ୟୁଟର ପରି ଅଟେ । ଯାହାକୁ ଶାସ୍ତ୍ରଭାଷାରେ ସମଷ୍ଟି କୁହନ୍ତି । କୌଣସି ଏକ ବ୍ୟକ୍ତିର ନିଜର କମ୍ପ୍ୟୁଟର ଅଛି, ତାହା ବ୍ୟଷ୍ଟିରୂପ ଅଟେ ଏବଂ ସବୁ ଜୀବଙ୍କ କମ୍ବାଇଣ୍ଡ୍ (ମିଳିତ) କମ୍ପ୍ୟୁଟର ସମଷ୍ଟିରୂପ ଅଟେ । ତାହାଦ୍ୱାରା ସବୁ ବ୍ୟବହାର ଚାଲୁଅଛି । ଏହାକୁ ମୁଁ ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ୍ ଏଭିଡେନ୍ସ (ବ୍ୟବସ୍ଥିତ ଶକ୍ତି) କୁହେ । ଯିଏ ପ୍ରତିଦିନ ସୂର୍ଯ୍ୟ, ଚନ୍ଦ୍ର, ତାରା, ସମସ୍ତଙ୍କୁ ବ୍ୟବସ୍ଥିତ ହିଁ ରଖେ ।

**ପ୍ରଶ୍ନକର୍ତ୍ତା :** ଯେଉଁ ଶକ୍ତି ଚଳାଉଛି, ତାହା କେଉଁଠୁ ଆସେ ?

**ଦାଦାଶ୍ରୀ :** ତାହା ପ୍ରାକୃତିକ ଶକ୍ତି ଅଟେ, ଭଗବାନଙ୍କ ଶକ୍ତି ନୁହେଁ । ଏହା ବହୁତ ବଡ଼ କଥା ଅଟେ, ବୁଝି ହେବ ଏପରି କଥା ନୁହେଁ । ଏହି ଏଟମ୍ ବମ୍ବ(ପରମାଣୁ ବୋମା) ତିଆରି କରିଛନ୍ତି, ତାହା ପରମାଣୁରେ ତିଆରି କରିଛନ୍ତି, ତେବେ ପରମାଣୁରେ କେତେ ଶକ୍ତି ଅଛି ?

**ପ୍ରଶ୍ନକର୍ତ୍ତା :** ବହୁତ ଶକ୍ତି ଅଛି ।

**ଦାଦାଶ୍ରୀ :** ଏପରି ଶକ୍ତି । ବହୁତ ଶକ୍ତିବାଲା ଏହି ଭଗବାନଙ୍କୁ ଦୁଃଖ ଦେଇଛି । ଭଗବାନଙ୍କ ଶକ୍ତି ତାହାଠାରୁ ବି ଅଧିକ । ପୁଣି ଭଗବାନ ନିଜ ଶକ୍ତିଦ୍ୱାରା ମୁକ୍ତ ହୁଅନ୍ତି ।

**ପ୍ରଶ୍ନକର୍ତ୍ତା :** ଭଗବାନଙ୍କ ଶକ୍ତି ଉପରେ ଏହା କେଉଁ ଶକ୍ତି?

**ଦାଦାଶ୍ରୀ :** କାହାର? ଉପରେ କୌଣସି ଶକ୍ତି ନାହିଁ । ଭଗବାନଙ୍କ ଶକ୍ତି ବହୁତ ଅଧିକ, ସବୁଠୁ ଅଧିକ । ଆଉ ଯେଉଁ ଅନାତ୍ମା (*ପୁଦ୍‌ଗଲ୍*) ଅଛି, ତା'ର ବି ଶକ୍ତି ବହୁତ ।

**ପ୍ରଶ୍ନକର୍ତ୍ତା :** ଏହି ଶକ୍ତି ଭଗବାନଙ୍କଠୁ ବି ଉପରେ?

**ଦାଦାଶ୍ରୀ :** ନା, ଭଗବାନଙ୍କର କେହି *ଉପରୀ* (ମାଲିକ) ନାହାନ୍ତି । ମାତ୍ର ସେ (ଅନାତ୍ମାର) ଶକ୍ତି ବହୁତ ରାକ୍ଷସୀ ଶକ୍ତି ଅଟେ, ସେହି ଶକ୍ତିରେ ତ ଭଗବାନ ନିଜେ ହିଁ ବନ୍ଧା ହୋଇଛନ୍ତି । ଏବେ ଭଗବାନ ମୁକୁଳିବାକୁ ଚାହୁଁଛନ୍ତି, ମାତ୍ର ସେ ମୁକୁଳି ପାରୁ ନାହାନ୍ତି । ପୁଣି ଏହାର ରାସ୍ତା କ'ଣ ବତାଇଛି ଯେ ଯିଏ ମୁକ୍ତ ହୋଇ ଯାଇଛନ୍ତି, ତାଙ୍କ ସାହାଯ୍ୟରେ ମୁକ୍ତ ହୋଇପାରିବ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଯିଏ ମୁକ୍ତ ହୋଇଛନ୍ତି, ତାଙ୍କୁ କିଏ ମୁକ୍ତ କଲା?

**ଦାଦାଶ୍ରୀ :** ତାହା ସମୟ କଲା । ତାଙ୍କ ସମୟ ହୋଇଗଲା ସେଥିପାଇଁ ମୁକ୍ତ ହୋଇଗଲେ । ସବୁ ଜୀବଙ୍କ ସମୟ ଆସିବ ସେତେବେଳେ ମୁକ୍ତ ହୋଇଯିବେ । ଏହି ସଂସାର ଜେଲ୍ (କାରାଗାର) ଅଟେ । ଭଗବାନ ସଂସାର ରୂପୀ ଜେଲ୍‌ରେ ଅଛନ୍ତି, କାଳ ପୂରା ହୋଇଯିବ ତେବେ ମୁକ୍ତ ହୋଇଯିବେ । ମାତ୍ର କାଳ ପୂରା ହେବା ପୂର୍ବରୁ, ତାଙ୍କୁ ମୁକ୍ତପୁରୁଷ (ଯିଏ ସାଂସାରିକ, ବିନାଶୀ ବନ୍ଧନରୁ ମୁକ୍ତ ହୋଇଥିବେ)ଙ୍କ ଦର୍ଶନ ହୋଇଯିବ ଏବଂ ସେହିଠାରୁ ମୁକ୍ତି ହୋଇଯିବ । ଏଥିରେ ମୁକ୍ତପୁରୁଷ ନିମିତ୍ତ ଅଟନ୍ତି । ଏହି ନିମିତ୍ତ ଦ୍ୱାରା ସେ ମୁକ୍ତ ହୋଇଯାନ୍ତି ।

## ତେବେ ଜଗତର କର୍ତ୍ତା, ଅଛି ନା ନାହିଁ?

ଏହି ଦୁନିଆର କର୍ତ୍ତା କେହି ବି ନାହିଁ, ଏବଂ କର୍ତ୍ତା ବିନା ବି ଦୁନିଆ ହୋଇନାହିଁ!

ଏ ଜଗତ କିଏ ତିଆରି କଲା?

**ପ୍ରଶ୍ନକର୍ତ୍ତା :** ମୋତେ ଜଣା ନାହିଁ, ତାହା ହିଁ ଜାଣିବାର ପ୍ରୟାସ କରୁଛି ।

**ଦାଦାଶ୍ରୀ :** ହଁ, ସମସ୍ତେ ଜାଣିବାର ପ୍ରୟାସ କରନ୍ତି, ମାତ୍ର କେହି ଜାଣନ୍ତି ନାହିଁ । The world is the puzzle itself. ଭଗବାନ ଏହି ପଜ୍‌ଲ୍ କରି ନାହାନ୍ତି । ଭଗବାନ ତ ପରମାନନ୍ଦୀ ଏବଂ ପରମଜ୍ୟୋତି ସ୍ୱରୂପ ଅଟନ୍ତି ।

**ପ୍ରଶ୍ନକର୍ତ୍ତା :** ତେବେ କ'ଣ ନିଜେ ହିଁ ପଜ୍‌ଲ୍ କରିଛୁ ?

**ଦାଦାଶ୍ରୀ :** ନା, ନିଜେ କି ପଜ୍‌ଲ୍ କରିବ ? ଏହି ଦୁନିଆର କେହି କ୍ରିଏଟର୍ ନାହିଁ । ଏହି ଦୁନିଆର କର୍ତ୍ତା କେହି ନାହିଁ । ଭଗବାନ ବି କର୍ତ୍ତା ନୁହଁନ୍ତି ଏବଂ ତୁମେ ବି କର୍ତ୍ତା ନୁହଁ ଏବଂ କର୍ତ୍ତା ବିନା ଏହି ଦୁନିଆ ହୋଇ ବି ନାହିଁ । ମୁଁ ବିରୋଧାଭାସୀ କଥା କହୁଛି ନା ? ମାତ୍ର ଏହା ବୁଝିବା ପରି କଥା ଅଟେ । 'କର୍ତ୍ତା ନାହିଁ' ଅର୍ଥାତ କେହି ସ୍ୱତନ୍ତ୍ର କର୍ତ୍ତା ନାହିଁ । ଆଉ 'କର୍ତ୍ତା ଅଛି', ଅର୍ଥାତ ସେ ନୈମିତ୍ତିକ କର୍ତ୍ତା ଅଟେ ।

ନିଜେ ଯଦି କର୍ତ୍ତା ହୋଇଥାନ୍ତା ତେବେ ମୋକ୍ଷରେ ଯାଇ ନଥାନ୍ତା, ମୁକୁଳି ପାରନ୍ତା ହିଁ ନାହିଁ । ନୈମିତ୍ତିକ କର୍ତ୍ତା ଅଟେ, ସେଥିପାଇଁ ମୁକୁଳି ଯାଏ । ସ୍ୱତନ୍ତ୍ର କର୍ତ୍ତା ଯଦି ହୋଇଥାନ୍ତା ତେବେ ସେ ଦୁନିଆର ମାଲିକ ହୋଇଯାଇଥାନ୍ତା ଯେ 'ମୁଁ ଏହି ଦୁନିଆ ତିଆରି କରିଛି, ତେଣୁ ମୁଁ ମାଲିକ ।' କିନ୍ତୁ କାହାକୁ ଝାଡ଼ା ଯିବାର ନିଜର ଶକ୍ତି ନାହିଁ, ତେବେ ମାଲିକ କେଉଁଠୁ ହୋଇଗଲା ?! କେହି ମାଲିକ ନୁହେଁ । ନୈମିତ୍ତିକ କର୍ତ୍ତା କାହାକୁ କୁହନ୍ତି ଯେ ଏହି ଡକ୍ଟରର ଧକ୍କା ତୁମକୁ ଲାଗିଗଲା ଏବଂ ତୁମ ଧକ୍କା ଏ ଭାଇକୁ ଲାଗିଗଲା ଆଉ ଏ ଭାଇ ପଡ଼ିଗଲା । ତା' ଗୋଡ଼ ଭାଙ୍ଗିଗଲା, ତେବେ ଏ ଭାଇ ତୁମକୁ କହିବ, 'ତୁମେ ମୋ ଗୋଡ଼ ଭାଙ୍ଗି ଦେଲ ।' ମାତ୍ର ତୁମେ ଜାଣିଛ, ତୁମକୁ ଏହି ଡକ୍ଟରର ଧକ୍କା ଲାଗିଥିଲା । ଏଥିରେ ତୁମର କୌଣସି ଇଚ୍ଛା ନାହିଁ, ଉତ୍ତରଦାୟିତ୍ୱ ନାହିଁ । ଏହିପରି ଅଟେ ଏହି ନୈମିତ୍ତିକ କର୍ତ୍ତା । କର୍ତ୍ତା ତ ଅଟେ କିନ୍ତୁ ନୈମିତ୍ତିକ କର୍ତ୍ତା ଅଟେ । The world is the puzzle itself, God has not puzzled this world at all. Only scientific circumstantial evidences ଅଟେ ।

ତୁମେ ସମୁଦ୍ର କୂଳ ଦେଖିଛ ? ସମୁଦ୍ରକୂଳରୁ ଅଳ୍ପ ଦୂରରେ ତୁମ ବଙ୍ଗଳା ହୋଇଥିବ, ବଙ୍ଗଳାର କମ୍ପାଉଣ୍ଡ(ଅଗଣା)ରେ ତୁମେ ଦୁଇଟି ଲୁହା ଛଡ଼ ରଖିଲ । ବାରମାସ ପରେ ତୁମେ ଗଲ, ତେବେ ଲୁହାକୁ କିଛି ହୋଇଯାଇଥିବ ? ତା'କୁ ରଷ୍ଟି (କଳଙ୍କି) କିଏ କଲା ? ସମୁଦ୍ର କଲା ? ଲୁଣି ପବନ କଲା ? ଲୁହାର ଇଚ୍ଛା ଥିଲା ? ଲୁଣି ପବନ କହିବ ଯେ ମୋର ଇଚ୍ଛା ନାହିଁ, ମୁଁ ତ ଏପରି କିଛି କରିନାହିଁ । ସମୁଦ୍ରକୁ ଯଦି ପଚାରିବା ତେବେ, ସେ ତ ତା'ର ନିଜ କ୍ଷେତ୍ରରେ ରମଣ କରୁଅଛି । ଲୁହାର ଭୁଲ ଅଛି କି ? ଲୁହାକୁ ଅନ୍ୟ ଜାଗାରେ ରଖିଥିଲେ କିଛି ହୋଇନଥାନ୍ତା । ତେବେ କଥା କ'ଣ ? କେବଳ ସାଇଣ୍ଟିଫିକ୍ ସରକମ୍‌ସ୍ଟେନ୍ସିୟଲ୍ ଏଭିଡେନ୍ସ ଅଟେ । ଏଥିରେ ଭଗବାନ କିଛି

କରନ୍ତି ହିଁ ନାହିଁ । ଭଗବାନ କ'ଣ କରନ୍ତି ? ଭଗବାନ ତ ତୁମକୁ ପ୍ରକାଶ ଦିଅନ୍ତି । ସେ ଚୋରକୁ ବି ପ୍ରକାଶ ଦିଅନ୍ତି ଏବଂ ପୋଲିସକୁ ବି ପ୍ରକାଶ ଦିଅନ୍ତି । ଭଗବାନ କ'ଣ କୁହନ୍ତି, 'ତୁମେ ଯାହା କରୁଛ, ତାହା ତୁମ ଉତ୍ତରଦାୟିତ୍ୱରେ କରୁଛ, ମୁଁ ତ ପ୍ରକାଶ ଦେଉଛି ।'

**ପ୍ରଶ୍ନକର୍ତ୍ତା :** ଏ ସାଇଣ୍ଟିଫିକ୍ ସରକମ୍‌ସ୍ଟେନ୍ସିୟଲ୍ ଏଭିଡେନ୍ସ ଅଛି, ତାହା କିପରି ହେଲା ? ତାହାକୁ କିଏ ପ୍ରସ୍ତୁତ କଲା ?

**ଦାଦାଶ୍ରୀ :** କେହି ପ୍ରସ୍ତୁତ କରିବାବାଲା ନାହିଁ । ତାହା ଆପେ ଆପେ ହୋଇଯାଏ । ତାହା କମ୍ପ୍ୟୁଟର ପରି ଚାଲେ । ପୂର୍ବଜନ୍ମର କର୍ମ, ତାହା ଫିଡ୍ ହୋଇଛି ଏବଂ ଏବେ ଯେଉଁ ଫଳ ମିଳିଲା ତାହା କମ୍ପ୍ୟୁଟର ପରି ଶକ୍ତି ଅଛି ସେ ଫଳ ଦିଏ, ଯାହାକୁ 'ବ୍ୟବସ୍ଥିତ ଶକ୍ତି' କହିଛି । ଯାହାକୁ ଶାସ୍ତ୍ରକାର 'ସମଷ୍ଟି' କହିଛନ୍ତି । ଇଂରାଜୀରେ ତାହାକୁ Scientific Circumstantial Evidence (ସାଇଣ୍ଟିଫିକ୍ ସରକମସ୍ଟେନ୍ସିୟଲ୍ ଏଭିଡେନ୍ସ) କୁହନ୍ତି ।

**- ଜୟ ସଚ୍ଚିଦାନନ୍ଦ**

## ମୂଳ ଗୁଜରାଟୀ ଶବ୍ଦର ସମାର୍ଥକ ଶବ୍ଦ

*ଆଚାର* : ଆଚରଣ
ବୀତରାଗ : ରାଗ୍-ଦ୍ୱେଷ ରହିତ
*ପୁଦ୍‌ଗଲ୍* : ଯାହା ପୂରଣ ଏବଂ ଗଳନ ହୁଏ
*ଉପରୀ* : ବରିଷ୍ଠ ମାଲିକ, ବୋସ୍
ବ୍ୟବସ୍ଥିତ : ବୈଜ୍ଞାନିକ ସଂଯୋଗଯୁକ୍ତ ପ୍ରମାଣ
ନିମିତ୍ତ : ମାଧ୍ୟମ, ସାଧନ
ସତ୍ତା : କ୍ଷମତା, ଅଧିକାର

## ଦାଦା ଭଗବାନ ଫାଉଣ୍ଡେସନ୍ ଦ୍ୱାରା ପ୍ରକାଶିତ ପୁସ୍ତକ

### ହିନ୍ଦୀ

୧. ଜ୍ଞାନୀପୁରୁଷ କୀ ପେହଚାନ୍
୨. ସର୍ବ ଦୁଃଖୌଁ ସେ ମୁକ୍ତି
୩. ଆତ୍ମବୋଧ
୪. ବର୍ତ୍ତମାନ ତୀର୍ଥଙ୍କର ଶ୍ରୀ ସୀମନ୍ଧର ସ୍ୱାମୀ
୫. ଦାଦା ଭଗବାନ କୌନ୍ ?
୬. ପୈସୌଁ କା ବ୍ୟବହାର
୭. ଅନ୍ତଃକରଣ କା ସ୍ୱରୂପ
୮. ପ୍ରେମ
୯. ସମଝ୍ ସେ ପ୍ରାପ୍ତ ବ୍ରହ୍ମଚର୍ଯ୍ୟ (ସଂ.)
୧୦. ଦାନ
୧୧. ନିଜଦୋଷ ଦର୍ଶନ ସେ... ନିର୍ଦ୍ଦୋଷ
୧୨. ପତି-ପତ୍ନୀ କା ଦିବ୍ୟ ବ୍ୟବହାର
୧୩. କ୍ଲେଶ ରହିତ ଜୀବନ
୧୪. ଗୁରୁ-ଶିଷ୍ୟ
୧୫. ଅହିଂସା
୧୬. ସତ୍ୟ-ଅସତ୍ୟ କେ ରହସ୍ୟ
୧୭. ଚମକ୍ରାର
୧୮. ବାଣୀ, ବ୍ୟବହାର ମେ...
୧୯. କର୍ମ କା ବିଜ୍ଞାନ
୨୦. ସହଜତା
୨୧. ଆପ୍ତବାଣୀ - ୧
୨୨. ଆପ୍ତବାଣୀ - ୨
୨୩. ଆପ୍ତବାଣୀ - ୩
୨୪. ଆପ୍ତବାଣୀ - ୪
୨୫. ଆପ୍ତବାଣୀ - ୫
୨୬. ଆପ୍ତବାଣୀ - ୬
୨୭. ଆପ୍ତବାଣୀ - ୭
୨୮. ଆପ୍ତବାଣୀ - ୮
୨୯. ଆପ୍ତବାଣୀ - ୯
୩୦. ଆପ୍ତବାଣୀ - ୧୩ (ପୂର୍ବାର୍ଦ୍ଧ - ଉତ୍ତରାର୍ଦ୍ଧ)
୩୧. ଆପ୍ତବାଣୀ - ୧୪ (ଭାଗ-୧)
୩୨. ସମଝ୍ ସେ ପ୍ରାପ୍ତ ବ୍ରହ୍ମଚର୍ଯ୍ୟ (ପୂର୍ବାର୍ଦ୍ଧ - ଉତ୍ତରାର୍ଦ୍ଧ)
୩୩. ଜ୍ଞାନୀ ପୁରୁଷ (ଭାଗ-୧)
୩୪. ପ୍ରତିକ୍ରମଣ (ଗ୍ରନ୍ଥ)

### ଓଡ଼ିଆ ପୁସ୍ତକ :

୧. ଆତ୍ମସାକ୍ଷାତ୍କାର
୨. ଚିନ୍ତା
୩. କ୍ରୋଧ
୪. ମାନବ ଧର୍ମ
୫. ମୁଁ କିଏ ?
୬. ତ୍ରିମନ୍ତ୍ର
୭. ସେବା ପରୋପକାର
୮. ପ୍ରତିକ୍ରମଣ
୯. ଏଡ଼ଜଷ୍ଟ ଏଭ୍ରିହ୍ୱେୟାର
୧୦. ଘର୍ଷଣ ଟାଳନ୍ତୁ
୧୧. କର୍ମର ସିଦ୍ଧାନ୍ତ
୧୨. ଜଗତ କର୍ତ୍ତା କିଏ ?
୧୩. ଯିଏ ଭୋଗେ ତା'ର ଭୁଲ
୧୪. ଯାହା ହେଲା ତାହା ନ୍ୟାୟ
୧୫. ଭାବନା ସୁଧାରେ ଜନ୍ମୋଜନ୍ମ
୧୬. ମାତା-ପିତା ଏବଂ ପିଲାଙ୍କ ବ୍ୟବହାର
୧୭. ମୃତ୍ୟୁ ସମୟରେ, ପୂର୍ବରୁ ଏବଂ ପରେ
୧୮. ପାପ-ପୁଣ୍ୟ

★ ଦାଦା ଭଗବାନ ଫାଉଣ୍ଡେସନ୍ ଦ୍ୱାରା ଗୁଜରାଟୀ ଭାଷାରେ ମଧ୍ୟ ଅନେକ ପୁସ୍ତକ ପ୍ରକାଶିତ ହୋଇଛି । ୱେବସାଇଟ୍ **www.dadabhagwan.org** ଏବଂ **Dadabhagwan App** ରେ ମଧ୍ୟ ଆପଣ ଏ ସମସ୍ତ ପୁସ୍ତକ ପ୍ରାପ୍ତ କରିପାରିବେ ।

★ ଦାଦା ଭଗବାନ ଫାଉଣ୍ଡେସନ୍ ଦ୍ୱାରା ପ୍ରତ୍ୟେକ ମାସ ହିନ୍ଦୀ, ଗୁଜରାଟୀ ତଥା ଇଂରାଜୀ ଭାଷାରେ "ଦାଦାବାଣୀ" ମାଗାଜିନ୍ ପ୍ରକାଶିତ ହେଉଛି ।

★ ଉପରୋକ୍ତ ଓଡ଼ିଆ ପୁସ୍ତକ ହିନ୍ଦୀ ଭାଷାରେ ମଧ୍ୟ ଉପଲବ୍ଧ ।

# ସମ୍ପର୍କ ସୂତ୍ର

## ଦାଦା ଭଗବାନ ପରିବାର


**ଅଡ଼ାଲଜ** : **ତ୍ରିମନ୍ଦିର,** ସୀମନ୍ଧର ସିଟୀ, ଅହମଦାବାଦ-କଲୋଲ ହାଇୱେ,
ପୋଷ୍ଟ-ଅଡ଼ାଲଜ,ଜିଲ୍ଲା-ଗାନ୍ଧୀନଗର, ଗୁଜରାଟ-382421
ଫୋନ- 9328661166/77
**Email :** info@dadabhagwan.org

**ମୁମ୍ବାଇ** : ତ୍ରିମନ୍ଦିର, ଋଷିବନ, କାଜୁପାଡା, ବୋରିବଲି (**E**)
ଫୋନ-9323528901

| | | | |
|---|---|---|---|
| **ଦିଲ୍ଲୀ** | 9810098564 | **ବେଙ୍ଗାଲୁରୁ** | 9590979099 |
| **କୋଲକତା** | 9830080820 | **ହାଇଦ୍ରାବାଦ** | 9885058771 |
| **ଚେନ୍ନାଇ** | 7200740000 | **ପୁନେ** | 7218473468 |
| **ଜୟପୁର** | 8890357990 | **ଜଲନ୍ଧର** | 9814063043 |
| **ଭୋପାଳ** | 6354602399 | **ଚଣ୍ଡିଗଡ** | 9780732237 |
| **ଇନ୍ଦୋର** | 6354602400 | **କାନପୁର** | 9452525981 |
| **ରାୟପୁର** | 9329644433 | **ସାଙ୍ଗଲୀ** | 9423870798 |
| **ପାଟନା** | 7352723132 | **ଭୁବନେଶ୍ୱର** | 8763073111 |
| **ଅମରାବତୀ** | 9422915064 | **ବାରାଣସୀ** | 9795228541 |

**U.S.A** : **DBVI, Tel . :**+1 877-505-DADA (3232),
**Email :** info@us.dadabhagwan.org

**U.K.** : +44 330-111-DADA (3232)

**Kenya** : +254 722 722 063

**UAE** : +971 557316937

**Dubai** : +971 501364530

**Australia** : +61 421127947

**New Zealand** : +64 21 0376434

**Singapore** : +65 81129229


**www.dadabhagwan.org**



## ଜଗତ କର୍ତ୍ତା କିଏ ?

ଏହି ଦୁନିଆର କେହି କ୍ରିଏଟର୍ ନାହିଁ । ଏହି ଦୁନିଆର କର୍ତ୍ତା କେହି ନାହିଁ । ଭଗବାନ ବି କର୍ତ୍ତା ନୁହଁନ୍ତି ଏବଂ ତୁମେ ବି କର୍ତ୍ତା ନୁହଁ ଏବଂ କର୍ତ୍ତା ବିନା ଏ ଦୁନିଆ ହୋଇ ବି ନାହିଁ । ମୁଁ ବିରୋଧାଭାଷୀ କଥା କହୁଛି ନା ? ମାତ୍ର ଏହା ବୁଝିବା ପରି କଥା ଅଟେ । 'କର୍ତ୍ତା ନାହିଁ' ଅର୍ଥାତ କେହି ସ୍ୱତନ୍ତ୍ର କର୍ତ୍ତା ନାହିଁ । ଆଉ 'କର୍ତ୍ତା ଅଛି', ଅର୍ଥାତ ସେ ନୈମିତ୍ତିକ କର୍ତ୍ତା ଅଟେ ।

- ଦାଦାଶ୍ରୀ




dadabhagwan.org




Printed in India

Price ₹25